dynasty known as the Nalas sprang up in Indravati vally, comprising Koraput and Bastar region of Mahakantara territory in the 5th-6th Century A.D. Gradualy the Nalas spread the banner of their sovereignty over Asurgarh region and the Mahakantara territory assumed a distinct name as ' Nalavadi Visaya '. At the height of their power their territory extended from the river wain Ganga in the west to the Indiavati in the south and from Eastern Ghata in the East to the Mekala region in the north. The Nalas were the close contemporaries of the Matharas of Kalinga and the Vakatakas of Central India. As such, the Nala kingdom formed a bullwork between the Matharas and the Vakatakas.

The origin of the Nalas is shrouded in obscurity. The Vayu Purana and Brahamanda Purana assert that the Nalas descended from a Nisada king Nala of the epic fame and destined to rule over Kosala. The Nalas notwithstanding their tribal origin claims high Ksatriya lineage as a result of the process of Ksatriyaization. As such, they adopted the Hindu model of kingship. Their Administrative pattern also followed the traditional Hindu line. The Kings of the dynasty donated land to the Brahamanas and partonised scholars. The Nalas moreover upheld Saivism and Vaisnavism. The society during the Nala rule was caste-ridden. The earlier classless tribal society was thus vivisected as a result of the impact of Sanskrit culture.

At the time when the Nala dynasty was the sovereign authority, some other minor dynasties might have, in the feudatory rank, ruled in the pheriphery zones of Kalahandi. One such dynasty was the Mudgalakula. Probably tha Mudgalakula ruled over Mohangiri-M. Rampur region. The ruined stone temple now found at Mohangiri was built during 6/7th century A.D., by a king known as Switachandra of Mudgala dynasty and the presiding deity of the temple was known as 'Yuha Bhairaba'. The construction of a Bhairava shrine in the predominantly tribal-belt like Mohangiri was significant. In the process of Hinduization, it was the Bhairava aspect of Siva which played important role. The Bhairava worship, a pre-eminently tribal-tantric creed, ultimately assimilated with Saivism at the time of Hinduization process in India. So, the erection of a stone shrine for the Bhairava worship at Mohangiri during the early medieval period is the bright testimony of the process of Hinduization that operated at village level in Kalahandi.

After the Nalas, however, the Sarabhapuriyas exercised their sovereignty over Kalahandi during the sixth and seventh century A.D. The present Maraguda valley of Nowapada sub-division was their site of activity. The Sarabhapuriyas claims their descent from a Sabara chieftain known as sarabha. Despite the tribal origin, however, the Sarahapuriyas region marks the systematic propagation of Sanskrit culture. The Kings of the dynasty championed orthodox creeds like Saivism, Saktism and Vaisnavism.

After the Sarabhapuriyas, Tivaradeva, of Somavamsi dynasty obtained the sovereignty of south Kosala. Lateron, during the reign of king Balarjuna, Kalahandi region became a part of thə Somavamsi kingdom. King Balarjuna issued his Lodhia copper plate in his 57th regnal year. This Charter registered grant of the village Khadira padraka and for the god Insaneswara. The endowment was made through the Brahmanas of Vadiya padraka. Both Khadira padraka and Vaiayapadraka are identified with the modern villages Khairapadar and Bhejipadar in Kalahandi district. The endowment was important for the purpose of Hinduization of hinterland. By this time, Belkhandi on the bank of river Tel developed as a Saivite centre. Many of the relics of Belkhandi has been assigned to 10th/11th century A.D.

In the early part of 11th century A. D., a territory called chakra-kota-mandala developed in the Indravati valley comprising part of Bastar district of Madhyapradesh and Koraput and Kalahandi districts of Orlssa. The Chindaka Nagas dynasty was ruling over this territory in the 11th century A.D. The Chindaka Nagas claims to have belonged to Kasyapa gotra and their tutelary goddess was Manikyadevi or Manikeswari. But it appears that the Chindka Nagas also belonged to tribal stock. Their deity Manikyadevi was also an autocthonous deity But subsequently, the dynasty and the goddess were Brahamanized.

After the fall of the Chindaka Nagas, the Gangas exercised their soveringty over Kalahandi. The present Naga dynasty succeeded to the Ganga in Kalahandi during the 14th century A.D. During the Naga rule over Kalahandi, goddess Manikeswari was supreme deity of veneration in The deity is continuing to enjoy this status even today. The cult of Manikeswari now prevailed in Bhawanipatna is a spectacular process of Tribal acculturation through Brahamanization in Kalahandi. In the tribal method of worship, it is the 'Head' portion of the icon, which is singificant. In the khond rituals of Kalahandi at village level 'Nabakalebra' ceremony of the wooden deity is modus-operandi according to tribal usage. Nabakalebara system is also followed in the cult of Jagannatha of Puri. This unique ceremony had its origin in the Khond rituals and later on penetrated into other cults when the autocthonous deities came within the fold of Sanskrit culture. However, the prevailed Manikeswari worship in Kalahandi, preserves this process of Nabakalebara in a modified manner. As already pointed out. the 'Head' of the icon is the chief object of veneration in tribal process of worship. So also the icon of Manikeswari now worshipped in the palace compound of Bhawanipatna is nothing but a 'Head' installed on the throne inside the temple. Manikeswari is a shapeless icon. The process of Nabakalebara has been practised in a modified manner here. The 'Head' of diety removes from its so called body on the 'Astami' night of Dusharee festival After the removal of the old 'Head' a new 'Head' has been placed on the so-called body of the deity. This is the most secret ceremony that has been practised in the temple of Manikeswari. A Brahamanic-Tantric belief of 'Chhinnamastha' has been ascribed to this process of Manikeswari as a result of the Brahamanization of the diety.

Tribal acculturation has been a highly significant issue in indian history. The present monogram at microscopic level, however, reveals the evolution of civilization and culture of the tribes and its ultimate compromise with vedic culture which had shaped the foundation of India and Indian culture.

# "କଳାହାଣ୍ଡିର ନାଟ୍ୟ ପରଂପରା"



ଶ୍ରୀ ପ୍ରଫୁଲ୍ଲ କୁମାର ରଥ

ପାଠକଙ୍କୁ ନାଟ୍ୟରଶ୍ମି ପ୍ରଫୁଲ୍ଲ କୁମାର ରଥଙ୍କ ପରିଚୟ ପ୍ରଦାନ କରିବା ସ୍ୱର୍ଗକୁ ଦୀପ ଦେଖାଇବା ସହ ସମାନ । କେବଳ ତାଙ୍କ କଳାକୃତିର ସର୍ଜନା କରିବା ଏଠାରେ ମୁଖ୍ୟ ଉଦ୍ଦେଶ୍ୟ । ଓଡ଼ିଶା ସଂଗୀତ ନାଟକ ଏକାଡେମୀ ଦ୍ୱାରା ୧୯୮୩ ମସିହାରେ ସମ୍ମାନିତ ଶ୍ରୀ ରଥ କଳାହାଣ୍ଡି ନାଟ୍ୟ ଜଗତର ଭୀଷ୍ମ ପିତାମହ । ତାଙ୍କର ହାସ୍ୟ ରସାତ୍ମକ ବେତାର ନାଟକ 'ସ୍ୱର୍ଗରେ ଷମତା ଲଢ଼େଇ' ଜାତୀୟ ସ୍ତରରେ ପୁରସ୍କୃତ । ଅର୍ଦ୍ଧ ଶତାଧିକ ନାଟକ, ଉପନ୍ୟାସ, ରହସ୍ୟ ଉପନ୍ୟାସର ସେ ରଚୟିତା । ଅନୁବାଦ ସାହିତ୍ୟ ପ୍ରତି ମଧ୍ୟ ତାଙ୍କର ଅବଦାନ କିଛି କମ ନୁହେଁ । କଳାହାଣ୍ଡି ଭଳି ଏକ ଉପେକ୍ଷିତ ପଛୁଆ ଅଂଚଳରେ ଦୁଇ ଦୁଇଟି ଚଳଚିତ୍ର ନିର୍ମାଣ କରିବାର ଧୃଷ୍ଟତା କରି ଯଥେଷ୍ଟ ସାହସର ପରିଚୟ ଦେଇଛନ୍ତି । କଳାହାଣ୍ଡି ଲେଖକ କଳାପରିଷଦ ଦ୍ୱାରା ପ୍ରକାଶିତ ସାହିତ୍ୟ ପତ୍ରିକାର ସେ ସଂପାଦକ । ଓଡ଼ିଶା ସାହିତ୍ୟ ଏକାଡେମୀ ଓ ଜୟପୁର ଆକାଶବାଣୀ କେନ୍ଦ୍ରର ଉପଦେଷ୍ଟା ରୂପେ ସେ ଦାୟିତ୍ୱ ନିର୍ବାହ କରିଛନ୍ତି ।

କଳାହାଣ୍ଡିର ନାଟ୍ୟପରଂପରା ଅତି ପ୍ରାଚୀନ ନ ହେଲେ ମଧ୍ୟ ଓଡ଼ିଆ ନାଟକ ସାହିତ୍ୟର ଅଭ୍ୟୁଦୟ ଯୁଗର ସମକାଳୀନ ବୋଲି କହିଲେ ବିଶେଷ କିଛି ଭୁଲ ହେବ ନାହିଁ । ଓଡ଼ିଶାର ଆଦ୍ୟ ନାଟ୍ୟକାର ରାମଶଙ୍କର ରାୟ ହୁଅନ୍ତୁ ବା ଲାଲଜଗମୋହନ........ ଆଦ୍ୟ 'ନାଟକ "କାଂଚି କାବେରୀ" ହେଉ ବା "ବାବାଜୀ'. ଏ' ଦୁଇ ନାଟ୍ୟକାର-ଙ୍କ ସମସାମୟିକ ନ ହେଲେ ମଧ୍ୟ ଖଡ଼ିଆଳ ରାଜା ବୀର ବିକ୍ରମଦେବ ଯେ ଓଡ଼ିଶାର ଅନ୍ୟତମ ଯୁଗସ୍ରଷ୍ଟା ନାଟ୍ୟକାର, ଏଥିରେ କୌଣସି ସନ୍ଦେହର ଅବକାଶ ନାହିଁ ।

କଳାହାଣ୍ଡିର ନାଟ୍ୟପରମ୍ପରା ଉପରେ ଆଲୋଚନା କରିବାକୁ ଗଲେ ଏଇ ଜିଲ୍ଲାର ଆଦ୍ୟ ନାଟ୍ୟକାର ବୀରବିକ୍ରମ ଦେବଙ୍କ ରଚିତ ନାଟକ ଗୁଡ଼ିକ ଉପରେ ଆଲୋକପାତ କରିବା ଅପରିହାର୍ଯ୍ୟ ହୋଇପଡ଼େ । ସମାଲୋଚକ ମାନେ ବେଳେ ବେଳେ କହିଥାନ୍ତି, ଯେତେବେଳେ ବୀରବିକ୍ରମ ଦେବ ନାଟକ ରଚନା କରୁଥିଲେ ସେତେବେଳେ ଖଡ଼ିଆଳ ଗୋଟାଏ ସ୍ୱୟଂ ସଂପୂର୍ଣ୍ଣ ଷ୍ଟେଟ୍ ଥିଲା । ଠିକ୍ ସ୍ୱାଧୀନତା ପରେ ପରେ ଯେତେବେଳେ ସ୍ୱତନ୍ତ୍ର କଳାହାଣ୍ଡି ଜିଲ୍ଲାର ସୃଷ୍ଟି ହେଲା, ସେତେବେଳେ ଖଡ଼ିଆଳ କଳାହାଣ୍ଡିରେ ସାମିଲ ହେଲା । ତେଣୁ କଳାହାଣ୍ଡି ଜିଲ୍ଲାର ଆଦ୍ୟ ନାଟ୍ୟକାର ଭାବରେ ୬ ବିକ୍ରମ ଦେବଙ୍କୁ ସ୍ୱୀକାର କରିଯାଇ ନ ପାରେ ।

ତେବେ ଏଇଠି ସ୍ୱତଃ ପ୍ରଶ୍ନ ଉଠେ କଳାହାଣ୍ଡିର ପ୍ରଥମ ନାଟ୍ୟକାର କିଏ?

୬ ଧର୍ମାନନ୍ଦ ତ୍ରିପାଠୀ ସ୍ୱାଧୀନତାର ବହୁ ପୂର୍ବରୁ କଳାହାଣ୍ଡିକୁ ଆସି ରାଜ ପରିବାରର ଗୃହ ଶିକ୍ଷକ ଭାବରେ ନିଯୁକ୍ତି ପାଇଥିଲେ ଏବଂ ତାଙ୍କର ଦୀର୍ଘ ସମୟ ରହଣି ଭିତରେ ସେ କଳାହାଣ୍ଡିରେ ରଚନା କରିଥିଲେ "ପ୍ରକୃତ ବନ୍ଧୁ" ନାମକ ଗୋଟିଏ କାଳ୍ପନିକ ଅଥଚ ସାମାଜିକ ନାଟକ, ତେବେ ସେ କ'ଣ କଳାହାଣ୍ଡିର ଆଦ୍ୟ ନାଟ୍ୟକାର ?

ତେବେ ସେ ଯାହା ହେଉନା କାହିଁକି, ମୋର ଉଦ୍ଦେଶ୍ୟ ହେଲା, କୌଣସି ବାଦ-ବିସମ୍ବାଦ ଭିତରେ ନ ପଶି କଳାହାଣ୍ଡି ଜିଲ୍ଲାର ନାଟ୍ୟପରଂପରା ଉପରେ ଆଲୋଚନା କରିବା । ତେଣୁ ମୋ ମତରେ ଖଡ଼ିଆଳ ରାଜା ସ୍ୱର୍ଗତ ବୀର ବିକ୍ରମ ଦେବ ଓ ତାଙ୍କ ନାଟକ ଗୁଡ଼ିକୁ ବାଦ ଦେଇ କଳାହାଣ୍ଡିର ନାଟ୍ୟପରଂପରା ଉପରେ କଦାପି ଆଲୋଚନା କରିଯାଇ ନ ପାରେ ।

ଠିକ୍ ରାମଶଙ୍କର ରାୟ ଏବଂ ଲାଲ ଜଗମୋହନ ଙ୍କ ପରେ ପରେ ହିଁ ବୀର ବିକ୍ରମ ଦେବ ଆରମ୍ଭ କରିଥିଲେ ତାଙ୍କ ନାଟ୍ୟକାର ଜୀବନ । ଏହାର ପ୍ରମାଣ ମିଳେ ତାଙ୍କ ରଚିତ "ଶୈଳବାଳା" ନାଟକରୁ । କାରଣ ସେ ଉକ୍ତ ନାଟକର "ଉପହାର" ପତ୍ରରେ ରାମଶଙ୍କର ଦ୍ୱାରା ପ୍ରଭାବିତ ହୋଇଥିବା

ଏବଂ ପ୍ରେରଣା ପାଇଥିବା କଥା ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି । ସେ ସର୍ବମୋଟ ବାର ଖଣ୍ଡ ନାଟକ ଲେଖିଥିଲେ । ତାଙ୍କ ନାଟକ ଗୁଡ଼ିକ ମଧ୍ୟରୁ ଶ୍ରେଷ୍ଠ ନାଟକ ଭାବରେ "ଉତ୍କଳ ଦୁର୍ଦ୍ଦଶା" ନାଟକକୁ ଗ୍ରହଣ କରାଯାଇପାରେ । ଏହି ନାଟକଟି ପ୍ରଖ୍ୟାତ ହିନ୍ଦି ନାଟ୍ୟକାର ଭାରତେନ୍ଦୁଙ୍କ "ଭାରତ ଦୁର୍ଦ୍ଦଶା" ନାଟକ ଦ୍ୱାରା ଅନୁପ୍ରେରିତ ହୋଇଥିଲେ ମଧ୍ୟ, ସ୍ୱାଧୀନପୂର୍ବ ଅର୍ଥାତ୍ ପରାଧିନ ଉତ୍କଳର ଚରମ ଦୁର୍ଦ୍ଦଶାକୁ ନାଟ୍ୟକାର ବୀର ବିକ୍ରମ ଦେବ ଯେପରି ଭାବରେ ଉତ୍କଳ ଦୁର୍ଦ୍ଦଶା ନାଟକରେ ଉପସ୍ଥାପିତ କରିଯାଇଛନ୍ତି, ତାର ପଟାନ୍ତର ନାହିଁ, "ଉତ୍କଳ ଦୁର୍ଦ୍ଦଶା" ନାଟକରେ ମୂଳତଃ ଅତ୍ୟାଚାରିତ... ନିସ୍ପେଷିତ... ଅବହେଳିତ ଉତ୍କଳର ସଠିକ୍ ଚିତ୍ର ଦେବା ସାଙ୍ଗେ ସାଙ୍ଗେ ତାର ଭିତରେ ସେ ଦେଖିଛନ୍ତି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ' ଗଠନର ଏକ ବାସ୍ତବ ସ୍ୱପ୍ନ । ଏଇ ସ୍ୱପ୍ନ ନାଟ୍ୟକାର ଶ୍ରୀ ଦେବ ଦେଖିଥିଲେ ୧୯୦୪ ସାଲ୍‌ରେ ଯାହାକି ପ୍ରକୃତ ରୂପ ନେଇଥିଲା ୧୯୩୬ ମସିହାରେ । କିନ୍ତୁ ହାୟ... ସେ ଯେଉଁ ସ୍ୱତନ୍ତ୍ର ଉତ୍କଳର ସ୍ୱପ୍ନ ବହୁ ଆଗରୁ ଦେଖିଥିଲେ ସେଇ ସ୍ୱପ୍ନର ସଫଳ ରୂପାୟନ ଦେଖିବା ପୂର୍ବରୁ ସେ ଇହଲୀଳା ସମ୍ବରଣ କରି ଚାଲି ଯାଇଥିଲେ ।

"ଉତ୍କଳ ଦୁର୍ଦ୍ଦଶା ନାଟକଟି ସେତେବେଳେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ମହାନ୍ ଆନ୍ଦୋଳନରେ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ବିଶିଷ୍ଟ ସମାଲୋଚକ ତଥା ପ୍ରାବନ୍ଧିକ ଶ୍ରୀ ପ୍ରଫୁଲ୍ଲ କୁମାର ସାମନ୍ତରାୟଙ୍କ ଭାଷାରେ "ଓଡ଼ିଆ ଜାତୀୟ ଜୀବନର ଚରମ ବିପର୍ଯ୍ୟୟ କାଳରେ ଉତ୍କଳ ଦୁର୍ଦ୍ଦଶା ନାଟକ ଥିଲା ସଫଳ ଜାତୀୟତା ଉଦ୍ଦୀପକ କାରୀ ଏକ ବଳିଷ୍ଠ ଦୃଶ୍ୟ କାବ୍ୟ ।

କଟକଠାରେ ଅନୁଷ୍ଠିତ ହୋଇଥିବା ଉତ୍କଳ ସମ୍ମିଳନୀର ଦ୍ୱିତୀୟ ଅଧିବେଶନରେ ଏଇ ନାଟକର ଛ'ଶହ କପି ବଣ୍ଟା ଯାଇଥିଲା । ବଜାରରେ ଉକ୍ତ ନାଟକର ଚାହିଦା ବହୁ ପରିମାଣରେ ଅନୁଭୂତ ହେବା ଯୋଗୁଁ ପ୍ରଜାବନ୍ଧୁ କାର୍ଯ୍ୟାଳୟର ମ୍ୟାନେଜର ଶ୍ରୀ ଜୟକୃଷ୍ଣଚ୍ୟାଉ ପଟ୍ଟନାୟକ ଏହାର ଦ୍ୱିତୀୟ ମୁଦ୍ରଣ କରାଇଥିଲେ । ଦ୍ୱିତୀୟ ସଂସ୍କରଣର ମୁଖବନ୍ଧରେ ପ୍ରକାଶକ ସ୍ପଷ୍ଟ ଭାବରେ ଲେଖିଛନ୍ତି- "ବର୍ତ୍ତମାନ ଉକ୍ତ ପୁସ୍ତକ ପାଇବା ନିମନ୍ତେ ଅନେକ ବ୍ୟକ୍ତି ଆଗ୍ରହ ପ୍ରକାଶ କରି ପତ୍ର ଲେଖିଥିବାରୁ ଆମ୍ଭେମାନେ ପ୍ରନେତା ମହୋଦୟଙ୍କ ଅନୁମତି ଗ୍ରହଣ କରି ଏହି ପୁସ୍ତକଟିର ଦ୍ୱିତୀୟ ସଂସ୍କରଣ ପ୍ରକାଶ କଲୁ । ଉପରୋକ୍ତ କଥନରୁ ନାଟକଟିର ଜାତୀୟତାର ମୂଲ୍ୟବୋଧ ଯେ କେତେ ପ୍ରଭାବଶାଳୀ ତାହା ସହଜରେ ଅନୁମେୟ । ତାଙ୍କର ସର୍ବ ପ୍ରଥମ ରଚିତ ନାଟକ "ପ୍ରେମଲତା" ର ପାଣ୍ଡୁଲିପି ପ୍ରକାଶିତ ହୋଇ ପାରିନାହିଁ । ବୋଧେ ଏହା କୌଣସି କାରଣରୁ ନଷ୍ଟ ହୋଇଯାଇଛି । କିନ୍ତୁ ଏହାର ଉଲ୍ଲେଖ ପୂର୍ଣ୍ଣଚନ୍ଦ୍ର ଭାଷାକୋଷରେ ଦିଆ ଯାଇଛି । ତତ୍କାଳୀନ ସାହିତ୍ୟ ପତ୍ରିକା "ଉତ୍କଳ ଦୀପିକା" ର ୧୫।୨।୧୯୦୨ ମସିହାରେ ପ୍ରକାଶ ପାଇଥିବା ସଂଖ୍ୟାରେ ଉକ୍ତ ନାଟକର ଚର୍ଚ୍ଚା କରାଯାଇଛି ବୋଲି ବିଶିଷ୍ଟ ସମାଲୋଚକ ଅଧ୍ୟାପକ ଡକ୍ଟର ଉପେନ୍ଦ୍ର ମହାନ୍ତି ତାଙ୍କ ସଂପାଦିତ ଓ ପ୍ରକାଶିତ "ବୀର ବିକ୍ରମ ନାଟିକାବଳୀ" ରେ ଲେଖିଛନ୍ତି ।

ନାଟ୍ୟକାର ଭାବରେ ଖଡ଼ିଆଳ ୰ ରଜା ବୀର ବିକ୍ରମ ଦେବ ଏକ ଅବିସ୍ମରଣୀୟ ପ୍ରତିଭା । ସେ ବିଧବା ବିବାହ, ନାରୀ ଜାଗରଣ, କୁସଂସ୍କାର ବିଲୋପ, ଅନ୍ଧ ବିଶ୍ୱାସ ଦୂରୀକରଣ ଜାତୀୟତାର ମୂଲ୍ୟବୋଧ ଉପରେ ଲେଖନୀ ଚାଳନା କରି ନିଷ୍ପେଷିତଙ୍କୁ ସଚେଷ୍ଟ, ସୁପ୍ତକୁ ଜାଗ୍ରତ କରିବାକୁ ଯୁଗଯୁଗ ପାଇଁ ଏକ ଅଦ୍ଭୁତ ପ୍ରେରଣା ଦେଇ ଯାଇଛନ୍ତି । ଏଇ କ୍ଷୁଦ୍ର ପ୍ରବନ୍ଧ ରେ ଉକ୍ତ ମହାନ୍ ପ୍ରତିଭାଙ୍କ କୃତି ଓ ସୃଷ୍ଟି ଉପରେ ପ୍ରାଞ୍ଜଳ ଭାବରେ ଆଲୋଚନା କରିବା ଧୃଷ୍ଟତା ବ୍ୟତୀତ ଆଉ କିଛି ହୋଇ ନ ପାରେ ।

ଏହା ଛଡ଼ା ବୀର ବିକ୍ରମ ଦେବଙ୍କ ଧର୍ମପତ୍ନୀ ଖଡ଼ିଆଳ ରାଣୀ ସାହେବା ୰ ଶ୍ରୀମତୀ ତୋଲାନନ୍ଦ ପ୍ରିୟା ଦେବୀ "ନାରୀ ସ୍ୱାତନ୍ତ୍ର୍ୟ" ନାମକ ଏକ ନାଟକ ରଚନା କରିଥିଲେ ବୋଲି ରାଜପରିବାର ଲୋକେ କୁହନ୍ତି, କିନ୍ତୁ ଉକ୍ତ ନାଟକର "ପାଣ୍ଡୁଲିପି" ବର୍ତ୍ତମାନ ଦୁଷ୍ପ୍ରାପ୍ୟ ।

ବୀର ବିକ୍ରମ ଦେବ ନାଟକ ଲେଖିଥିଲେ ଏବଂ ଉକ୍ତ ନାଟକ ଗୁଡ଼ିକ ଖଡ଼ିଆଳ ରଙ୍ଗମଂଚରେ ଧାରାବାହିକ ଭାବରେ ୧୮୯୫ ମସିହାରୁ ମଂଚସ୍ଥ ହୋଇ ଆସୁଥିଲା ।

ଖଡ଼ିଆଳର ବୟୋବୃଦ୍ଧ ବିଶିଷ୍ଟ ସାହିତ୍ୟିକ ଏବଂ ପ୍ରାବନ୍ଧିକ କବିରାଜ ଶ୍ରୀ ପ୍ରୟାଗ ଦତ୍ତ ଯୋଷୀ "ଓଡ଼ିଶାର ନାଟ୍ୟ ଓ ମଂଚକଳା ବିକାଶରେ ଖଡ଼ିଆଳର ଭୂମିକା" ନାମକ ଏକ ପ୍ରବନ୍ଧରେ ଲେଖିଛନ୍ତି - "୧୮୯୦ ସାଲରୁ ରଜା ବ୍ରଜରାଜ ସିଂହ ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଚନ୍ଦନ ଯାତ୍ରା ମହୋତ୍ସବକୁ ସପ୍ତାହ ବ୍ୟାପୀ ମେଳା ରୂପରେ ପାଳନ କରଉଥିଲେ । ଏହାକୁ ନିଜ ନାଟକ ମାନଙ୍କୁ ମଂଚସ୍ଥ କରିବାର ଓ ତନ୍ନିହିତ ଭାବଧାରାକୁ ସମାଜ ସଂସ୍କାର ନିମନ୍ତେ ପ୍ରଚୁର ପ୍ରସାରର ସୁଯୋଗ ରୂପେ ଗ୍ରହଣ କରି ନେଇଥିଲେ । ଏତଦ୍ ନିମିତ୍ତ ଏହିଠାରେ ହିଁ ମଂଚ ପ୍ରସ୍ତୁତ ହେଉଥିଲା ।

ପରେ ଅଠର ଶହ ପଞ୍ଚାନବେ ସାଲରେ ଏହି ଚନ୍ଦନ ଟାଣା ପଡ଼ିଆରେ ଗୋଟାଏ ସ୍ଥାୟୀ ରଂଗମଂଚ ନିର୍ମାଣ କରାଇ ତାକୁ "ଙ୍କର ବନ୍ଧମ ଥିଏଟର" ରୂପେ ନାମିତ କରିଥିଲେ । ଅମ୍ଭ ଜାଣିବାରେ ଏହା ଓଡ଼ିଶାର ପ୍ରଥମ ସ୍ଥାୟୀ ରଙ୍ଗମଂଚ, ଯାହାକି ନିରବଚ୍ଛିନ୍ନ ଭାବରେ ୫୫ ବର୍ଷ ଧରି ଅର୍ଥାତ ୧୯୫୦ ସାଲ ପର୍ଯ୍ୟନ୍ତ ସ୍ଥାନୀୟ କଳା ଓ ସଂସ୍କୃତିର ମୁଖ୍ୟ ପ୍ରକାଶନ ମାଧ୍ୟମ ରୂପେ କାର୍ଯ୍ୟ କରିଥିଲା ।"

ବର୍ତ୍ତମାନ ଖଡ଼ିଆଳର ସେଇ ଐତିହାସିକ ରଙ୍ଗମଞ୍ଚ ଏବଂ ତାର ନାଟ୍ୟକାର ଇତିହାସ ର ଅବସ୍ମରଣୀ କେତୋଟି ପୃଷ୍ଠା ହୋଇ ରହି ଯାଇଥିଲେ ମଧ୍ୟ ସ୍ୱାଧିନତାର ପରବର୍ତ୍ତୀ କାଳରେ ସୌଖୀନ କଳାକାର ମାନେ ଉକ୍ତ ନାଟ୍ୟ ପରଂପରାକୁ ବଜାଇ ରଖି ଆସିଛନ୍ତି ।

ନାଟକ ରଚନା ଓ ପରିବେଷଣ କ୍ଷେତ୍ରରେ ଭବାନୀପାଟଣା ସହର ହେଉଛି କଳାହାଣ୍ଡି ଜିଲ୍ଲାର ଏକ ପାରଂପାରିକ ପିଠସ୍ଥ କ୍ଷେତ୍ର ।

ସ୍ୱାଧିନତାର ବହୁ ପୂର୍ବରୁ ୰ ବ୍ରଜମୋହନ ଦେଓ ନାଟ୍ୟକଳାର ପୃଷ୍ଠପୋଷକତା କରି ଆସିଥିବା ବହୁଳ ପ୍ରମାଣ ତଥ୍ୟ ମିଳେ । ତାଙ୍କ ରାଜତ୍ୱକାଳରେ ୰ ଧର୍ମାନନ୍ଦ ତ୍ରିପାଠୀ ରାଜ ପରିବାରର ଗୃହ ଶିକ୍ଷକ ଭାବରେ ନିଯୁକ୍ତ ପାଇ ବହୁ ବର୍ଷ ଧରି ଭବାନୀପାଟଣା ରେ ରହିଥିଲେ ଏବଂ ନାଟକ ରଚନାରେ ମନୋନିବେଶ କରିଥିଲେ । ତାଙ୍କର ଲିଖିତ "ପ୍ରକୃତ ବନ୍ଧୁ" ନାଟକ ହେଉଛି ଏକ ଜ୍ୱଳନ୍ତ ଉଦାହରଣ ।

ଉକ୍ତ ନାଟକଟି ଏକ କାଳ୍ପନିକ ବିଷୟ ବସ୍ତୁ ଉପରେ ଆଧାରିତ ହେଲେ ହେଁ, "ବନ୍ଧୁତା" ର ନିଷ୍ଠା ଓ ପରାକାଷ୍ଠାର ଏକ ପ୍ରକୃତ ବାହାକ । ଉକ୍ତ ନାଟକଟି ଦରବାରୀ କର୍ମଚାରୀ ଙ୍କ ଦ୍ୱାରା ମଂଚସ୍ଥ ହୋଇ ବହୁ ଜନ ପ୍ରିୟତା ଲାଭ କରିଥିଲା ।

ବ୍ରଜମୋହନ ଦେଓ ଙ୍କ ସ୍ୱର୍ଗାରୋହଣ ପରେ ପରେ ତାଙ୍କର ସୁଯୋଗ୍ୟ ସନ୍ତାନ କଳା-ସଂସ୍କୃତି-କ୍ରୀଡ଼ାପ୍ରେମୀ ଶ୍ରୀଯୁକ୍ତ ପ୍ରତାପ କେଶରୀ ଦେଓ ସିଂହାସନ ଆରୋହଣ କରିବା ସାଙ୍ଗେ ସାଙ୍ଗେ ସାହିତ୍ୟ-କଳା-ସଂସ୍କୃତି-କ୍ରୀଡ଼ାର ସର୍ବାଙ୍ଗୀନ ଉନ୍ନତି ସାଧନ କରିବା ନିମନ୍ତେ ବହୁବିଧ ପଦକ୍ଷେପ ମାନ ଗ୍ରହଣ କରିଥିଲେ ।

ତାଙ୍କର ପ୍ରେରଣା ଓ ପୃଷ୍ଠପୋଷକତାରେ ୧୯୪୪ ସାଲରେ ତାଙ୍କର ୰ ପିତୃଦେବଙ୍କ ନାମରେ ସ୍ଥାପନ କରଯାଇ ଥିଲା "ବ୍ରଜମୋହନ ସାହିତ୍ୟ ସମିତି" । ଏହି ବ୍ରଜମୋହନ ସାହିତ୍ୟ ସମିତି କେବଳ କଳାହାଣ୍ଡି ର ନୁହେଁ, ସମଗ୍ର ଓଡ଼ିଶାର ସାଂସ୍କୃତିକ ପ୍ରାଣ କେନ୍ଦ୍ର ଭାବରେ ବିଜୟ ଶଂଖନାଦ କରି ଚାଲିଥିଲା । ସମଗ୍ର ଓଡ଼ିଶାରେ ନାଟକ ରଚନା ଓ ଅଭିନୟ କଳାକୁ ଉତ୍ସାହିତ କରିବାପାଇଁ ଓଡ଼ିଶା ସ୍ତରରେ ପ୍ରତିବର୍ଷ ନାଟକ ରଚନା ପ୍ରତିଯୋଗିତା ଅନୁଷ୍ଠିତ ହେଉଥିଲା ଏବଂ ସର୍ବୋତ୍କୃଷ୍ଟ ନାଟକ ପାଣ୍ଡୁଲିପି କୁ ଏକ ହଜାର ଟଙ୍କା ଏଇ ସାହିତ୍ୟ ସମିତି ପୁରସ୍କାର ଭାବରେ ଦେଉଥିଲା । ସେତେବେଳେ କଟକ ର ଯୁବନାଟ୍ୟକାର ଶ୍ରୀ ନଗେନ୍ଦ୍ର କୁମାର ରାୟ "କଳିଂଗ ବିଜୟ" ନାଟକ ରଚନା କରି ଏଇ ଗାରିମାମୟ ପୁରସ୍କାର ଲାଭ କରିଥିଲେ ।

ନାଟ୍ୟକଳାର ବହୁବିଧ ଉନ୍ନତି ସାଧନ ନିମନ୍ତେ ମହାରାଜା ଶ୍ରୀ ପ୍ରତାପ କେଶରୀ ଦେଓ କଟକରୁ ନାଟ୍ୟ ନିର୍ଦ୍ଦେଶକ ୰ ବଳେଇ ବାନାର୍ଜୀଙ୍କୁ ଆଣି ଭବାନୀପାଟଣା ଠାରେ ଉପଯୁକ୍ତ ପାରିଶ୍ରମିକ ଦେଇ ରଖାଇଥିଲେ । ସ୍ୱର୍ଗତ ବଳେଇ ବାବୁ ପ୍ରାୟ ଚାରି ପାଞ୍ଚ ବର୍ଷ ଖଣ୍ଡେ ଭବାନୀପାଟଣାରେ ରହି, "ସମ୍ବରସୁର ବଧ", ଚନ୍ଦ୍ରଧାରୀ, ଗୟାତୀର୍ଥ, ସେଓଜୀ, କର୍ଣ୍ଣାର୍ଜ୍ଜୁନ, ଟିପୁସୁଲତାନ ଆଦି ଅନେକ ପୌରାଣିକ ଏବଂ ଐତିହାସିକ ନାଟକ ସବୁ ଧାରାବାହିକ ଭାବରେ ମଂଚସ୍ଥ କରିବା ସାଙ୍ଗେ ସାଙ୍ଗେ ଅନେକ ସୁଅଭିନେତା ଓ ନିର୍ଦ୍ଦେଶକ ମଧ୍ୟ ଗଢ଼ିଥିଲେ । ଉଦୟନାଥ ନନ୍ଦ, ହରିହର ମିଶ୍ର, ୰ ଅନନ୍ତ ପ୍ରଧାନ, ୰ ଗଂଗାଧର ମିଶ୍ର, ୰ ଭଗିରଥି ମିଶ୍ର, ୰ ଅସରଫ ଅଲ୍ଲି ଖାଁ, ସୋମନାଥ ମିଶ୍ର, ଗଂଗାଧର ମହାପାତ୍ର ପ୍ରଭୃତି ଅଭିନେତା ମାନେ ନିଜ ନିଜର ଅଭିନୟ ଦକ୍ଷତା ପାଇଁ ଏ ପର୍ଯ୍ୟନ୍ତ ଜନମାନସରେ ଆଦରଣୀୟ ହୋଇ ରହି ଆସିଛନ୍ତି ।

ପନ୍ଦର ଅଗଷ୍ଟ ୧୯୪୭ ରେ ଭାରତ ସ୍ୱାଧୀନ ହେଲା । ୧୯୪୮ ସାଲ୍‌ରେ ଗଡଜାତ ସବୁ ଓଡ଼ିଶାରେ ମିଶି ବୃହତ୍ତ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେଲା । ମହାରାଜା ଶ୍ରୀ ପ୍ରତାପ କେଶରୀ ଦେଓ ରାଜନୀତି ମହାଯଜ୍ଞରେ ଝାସ ଦେଲେ । କଳା-ସଂସ୍କୃତି ପାଇଁ ତାଙ୍କ ମନରେ ଆଉ ସେତେଟା ଆଗ୍ରହ ରହିଲାନି । ବଳେଇବାବୁ କଳାହାଣ୍ଡିରୁ ବିଦାୟ ନେଇ କଟକ ଚାଲିଗଲେ ।

ମନେହେଲା ଏତିକିବେଳେ ଯେମିତି ଭବାନୀପାଟଣାରୁ ଚିରଦିନ ସକାଶେ ନାଟ୍ୟକଳା ର ସମାଧି ହୋଇଗଲା ।

କିନ୍ତୁ ନାଟକ ଏବଂ ନାଟ୍ୟକଳା କେବେ ମରେନି । ଏହା ପଞ୍ଚମ ବେଦ । ମନୋରଂଜନ ଓ ଶିକ୍ଷା ଦୃଷ୍ଟିରୁ ନାଟକ ଜନ-ଜୀବନ ସହ ଓତପ୍ରୋତ ଭାବରେ ଜଡ଼ିତ । ମଣିଷ ଜାତି ବଂଚିଥିବା ପର୍ଯ୍ୟନ୍ତ ନାଟକ ବି ସେମିତି ବଂଚିଥିବ । ବଡ଼ ବଡ଼ ପଣ୍ଡିତ ତଥା ସମାଲୋଚକ ମାନେ କହିଯାଇଛନ୍ତି -

The nation is known by its theatre. Drama is very nearer to the life. It is a totally media of mass communication.

ସଂସ୍କୃତରେ ବି କୁହାଯାଇଛି - "କାବ୍ୟେଷୁ ନାଟକ ରମ୍ୟ" ।

ଠିକ୍ ସ୍ୱାଧୀନତାର ପ୍ରାକ୍ କାଳରେ କଳାହାଣ୍ଡି ଜିଲ୍ଲାର ସଦର ମହକୁମାରେ ବ୍ୟବସାୟିକ ଭିତ୍ତିରେ ଗଢ଼ି ଉଠିଲା "ଆଦଲ ଥିଏଟର୍ସ" । ୰ ଅଦଲ ଖାଁ ଥିଲେ ସେଇ ଆଦଲ ଥିଏଟସ ର ପ୍ରତିଷ୍ଠାତା । କଳାହାଣ୍ଡି ଜିଲ୍ଲା ବାହାରୁ ପ୍ରଥମ ଥର ପାଇଁ ନାମି ଅଭିନେତ୍ରୀ ଏବଂ ଅଭିନେତା... ସଂଗୀତଜ୍ଞ... ନୃତ୍ୟବିତ୍ ସବୁ ଆସି ମାସିକ ଦରମା ପାଇ ଆଦଲ୍ ଥିଏଟର ରେ କାମ କରିବାକୁ ଲାଗିଲେ । ଆଦଲ ଥିଏଟର୍ସ ବାଲେଇବାବୁ ଙ୍କ ଦ୍ୱାରା ମଂଚସ୍ଥ ହେଇଥିବା କେତେଟି ପୁରୁଣା ନାଟକକୁ ଦୋହରେଇବା ସାଙ୍ଗେ ସାଙ୍ଗେ ୰ କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ, ୰ ଅଶ୍ୱିନୀ କୁମାର ଘୋଷ, କାର୍ତ୍ତିକ ଘୋଷ, ରାମଚନ୍ଦ୍ର ମିଶ୍ର ଏବଂ ଭଂଜ କିଶୋର ପଟ୍ଟନାୟକ ଙ୍କ ଉଚିତ ନୂତନ ସ୍ୱାଦର ନାଟକ ଗୁଡ଼ିକ ମଧ୍ୟ ମଂଚସ୍ଥ କରୁଥିଲେ । କିନ୍ତୁ ୪।୫ ବର୍ଷ ଭିତରେ ସେଇ ଥିଏଟର ପାଟ ଭାଂଗି ଯାଇଥିଲା ।

ଆଦଲ ଥିଏଟରସର ଠିକ୍ ପତନ ପରେ ପରେ ୰ ଉଦୟ ନାଥ ନନ୍ଦ ଙ୍କ ନେତୃତ୍ୱ ରେ ଗଢ଼ି ଉଠିଥିଲା ସୌଖୀନ ନାଟ୍ୟ ସଂସ୍ଥା "ଉଦୟ ନାଟ୍ୟ ସଂଘ" ଏହି ନାଟ୍ୟ ସଂଘ ବର୍ଷକୁ ଗୋଟାଏ ନାଟକ ନିର୍ଦ୍ଦିଷ୍ଟ ଭାବରେ ମଂଚସ୍ଥ କରୁଥିଲା । ୧୯୫୪ ସାଲରେ କଟକର ଅନ୍ନପୂର୍ଣ୍ଣା "ବି" ଗ୍ରୁପ୍ ରଂଗମଂଚରେ ଅନୁଷ୍ଠିତ ହେଇଥିବା ଓଡ଼ିଶା ସ୍ତରୀୟ ନାଟକ ପ୍ରତିଯୋଗୀତାରେ ଏଇ ସଂସ୍ଥାର ନାଟକ "ଟିପୁ ସୁଲତାନ" ଭାଗ ନେଇଥିଲା । ହାଇଦର ଅଲ୍ଲି ଭୂମିକାରେ ଅଭିନୟ କରି ୰ ଅସରଫ ଅଲ୍ଲି ଖାଁ ଶ୍ରେଷ୍ଠ ଅଭିନେତା ଭାବରେ ବିବେଚିତ ହୋଇ ସ୍ୱର୍ଣ୍ଣ ପଦକ ହାସଲ କରିଥିଲେ । ଉଦୟ ନାଟ୍ୟ ସଂଘ ଦ୍ୱାରା ମଂଚସ୍ଥ ହୋଇଥିବା ସମସ୍ତ ନାଟକ ଗୁଡ଼ିକ ନିର୍ଦ୍ଦେଶନା ଦେଇଥିଲେ ୰ ଉଦୟନାଥ ନନ୍ଦ ।

ଏହାଛଡ଼ା ଶ୍ରୀ ସୋମନାଥ ମିଶ୍ରଙ୍କ ନିର୍ଦ୍ଦେଶନାରେ ମଧ୍ୟ ଚଣ୍ଡୀ, ଚୁମ୍ବନ, ଗୃହବୁକ, ମମତା, ମାଣିକଯୋଡ଼ି, ମୂଲିଆ, ଘର-ସଂସାର, ବୈରାଗୀର ସଂସାର ପ୍ରଭୃତି ଅନେକ ସାମାଜିକ ନାଟକ ମଂଚସ୍ଥ ହେଇ ଥିଲା । ସର୍ବ ଶ୍ରୀ ମହେଶ୍ୱର ନାୟକ, ଗଂଗାଧର ହୋତା, ଚିନ୍ତାମଣି ମହାପାତ୍ର, ସରୋଜ ପଟ୍ଟନାୟକ ମନମୋହନ ଚୌଧୁରୀ, ଜନାର୍ଦ୍ଦନ ଷଡ଼ଙ୍ଗୀ, ବଟକୃଷ୍ଣ ମିଶ୍ର, ବିଶୋଇ ବାବୁ, ମହାନ୍ତି ବାବୁ, କାଳିପ୍ରସାଦ ମିଶ୍ର, ସୁରେଶ ମହାନ୍ତି, ବାୟୁଧର ମହାପାତ୍ର ପ୍ରଭୃତି ଅଭିନେତା ଭାବରେ ଏବଂ ନାରୀ ଭୂମିକାରେ ଅଭିନୟ କରି ସର୍ବ ଶ୍ରୀ ଭୁବନେଶ୍ୱର ମୁନା, ସହଦେବ ବିଶି, ଯୁଗଳ ପତି ପ୍ରଭୃତି ବିଶେଷ ନାଁ କରିଥିଲେ ।

ସମୟ ବଦଳି ବଦଳି ଆସୁଥିଲା । ପାରଂପାରିକ ଜୀବନ ଧାରାରେ ଧୀରେ ଧୀରେ ଚାଲି ଆସୁଥିଲା ବୈପ୍ଳବାତ୍ମକ ପରିବର୍ତ୍ତନ । ଲୋକେ ସ୍ୱାଧିନତାର ମିଠା ଚାଖିବା ସାଙ୍ଗେ ସାଙ୍ଗେ ନୂତନ ଚିନ୍ତାଧାରା ନୂତନତ୍ୱର ସ୍ୱାଦ ସନ୍ଧାନରେ ଖୁବ୍ ଦ୍ରୁତ ଗତିରେ ଧାଇଁବାକୁ ଆରଂଭ କରି ଦେଇଥିଲେ । ଜନତାକୁ ଆଉ ପୁରୁଣାର ପୁନରାବୃତ୍ତି ଭଲ ଲାଗୁ ନ ଥିଲା । ସେମାନେ ନାଟକ ଗୁଡ଼ିକ ଭିତରେ ଦେଖିବାକୁ ଚାହୁଁଥିଲେ ନିଜକଥା... ନିଜ ପରିବାର... ସମାଜ ଓ ଦେଶର କଥା । ଲୋକେ ନାଟକକୁ ନିଜ ଆତ୍ମା ଭିତର କୁ ଟାଣି ଆଣି ତାରି ମାଧ୍ୟମରେ ନିଜର ଓ ସମାଜର ସମସ୍ୟା କଥା ଦେଖିବାକୁ ଅତି ମାତ୍ରାରେ ବ୍ୟାକୁଳ ହେଇ ଉଠୁଥିଲେ ।

ବଂଗଳାରୁ ବିକୃତ ଭାବରେ ଅନୁବାଦିତ ହେଇଥିବା ଐତିହାସିକ ଆଉ ପୌରାଣିକ ନାଟକ ଦେଖିବାକୁ ଚାହୁଁ ନଥିଲେ । ଠିକ୍ ଏଇ ଘଡ଼ି ସନ୍ଧି ମୁହୂର୍ତ୍ତରେ ଆଉ ଏକ ନାଟ୍ୟ ପ୍ରତିଭାର ଅଭ୍ୟୁଦୟ ଘଟିଲା । ସେ ହଉଛନ୍ତି ନାଟ୍ୟ ରଶ୍ମୀ ପ୍ରଫୁଲ୍ଲ କୁମାର ରଥ ଅର୍ଥାତ ମୁଁ ନିଜେ । ଏଇ ପ୍ରବନ୍ଧରେ ମୋ ନିଜ ଢୋଲ୍ ନିଜେ ପିଟିବା ଅର୍ଥ ନିଜ ବୋକାମୀ ଏବଂ ମୂର୍ଖତାକୁ ଡାକି ଆଣିବା । ତେବେ ଏହା ନିଛକ ସତ ଆଜିକି ଲଗାତର ତିରିଶ ବର୍ଷ ଧରି ଶ୍ରୀ ରଥ ବିଜୟା କ୍ଲବ ଏବଂ ସ୍ମାରକୀ ନାଟ୍ୟ ସଂସ୍ଥା ନାମକ ଦୁଇଟି ନାଟ୍ୟ ସଂସ୍ଥା ପ୍ରତିଷ୍ଠା କରି ହାରାହାରି ୭୦।୮୦ ନାଟକ ଏବଂ ୫୦।୬୦ ଏକାଂକିକା ଓ ବେତାର ନାଟକ ରଚନା ଓ ମଂଚସ୍ଥ କରି କେବଳ ଓଡ଼ିଶା ନୁହେଁ ଓଡ଼ିଶା ବାହାରେ ମଧ୍ୟ କଳାହାଣ୍ଡିର ନାଟ୍ୟ ପରଂପରା ର ଗାରିମା କୁ ପ୍ରତିଷ୍ଠିତ କରିବା ସଙ୍ଗେ ସଙ୍ଗେ ନାଟକ ରଚନା ଓ ନିର୍ଦ୍ଦେଶନା କ୍ଷେତ୍ରରେ ଓଡ଼ିଆ ନାଟ୍ୟକଳାକୁ ଏକ ନୂତନ ଦିଗଦର୍ଶନ ଦେଇ ପାରିଛନ୍ତି ।

ଏଇ ଲେଖକଙ୍କ ଦ୍ୱାରା ରଚିତ "ସ୍ୱର୍ଗରେ ଝମଡ଼ା ଲଢେଇ" ନିଖିଳ ଭାରତୀୟ ବେତାର ନାଟକ ପ୍ରତିଯୋଗିତାରେ ଶ୍ରେଷ୍ଠ ହାସ୍ୟ ରସାତ୍ମକ ନାଟକ ଭାବରେ ଜାତୀୟ ପୁରସ୍କାର ଲାଭ କରିବାର ଗୌରବ ଅର୍ଜନ କରି ପାରିଛି ଏହାଛଡ଼ା ନାଟକ ଶୂନ୍ୟ ଆକାଶ ଅମର ଆଖି, ଶବ ପଡ଼ିଛି, ଯାହା କହିବ, ସ୍ୱର୍ଗକୁ ଯାଅ ହେ ପାପୀମାନେ, ଦ୍ୱିପଦ ଚତୁଷ୍ପଦ ଚାର୍ଲି, ସାତ ତାଳ ପାଣି ପ୍ରଭୃତି ନାଟକ ଦିଲ୍ଲୀ, ଏଲାହାବାଦ, ସମ୍ବଲପୁର ଓ ଭୁବନେଶ୍ୱରରେ ଅନୁଷ୍ଠିତ ହୋଇଥିବା ନାଟକ ପ୍ରତିଯୋଗିତାରେ ବିଭିନ୍ନ ପୁରସ୍କାର ଲାଭ କରି କଳାହାଣ୍ଡିର ଗୌରବ ବୃଦ୍ଧି କରି ପାରିଛି । ତଥା ୰ ବିଶ୍ୱ ରଂଜନ ମିଶ୍ର ୰ ବୈଦ୍ୟନାଥ ରଥ, ପୁରୁଷୋତ୍ତମ ବ୍ରହ୍ମା, ସରୋଜ ମିଶ୍ର, ଗିରିଶ ପୁରୋହିତ, ଜଗନ୍ନାଥ ମୁଣ୍ଡ, ଅଶୋକ ପାତ୍ର, ଗୋବିନ୍ଦ ରଥ, ବିଶ୍ୱନାଥ ସେନାପତି, ମନୋଜ ଦାସ, ଇଶ୍ୱର ମିଶ୍ର, ମୁଣ୍ଡ୍ରୁ, ବୈଦ୍ୟନାଥ ମିଶ୍ର (ଖଲି) ଉମା ବେହେରା, ରମା କର; ରାମଚନ୍ଦ୍ର ରଥ ମୋହନ ଲାଲ ଅଗ୍ରୱାଲ ୰ ହିମାଂଶୁ ମହାପାତ୍ର ୰ ସୁବାସ ରଥ ଓ ସ୍ୱର୍ଗୀୟ ରମେଶ ରାଉତରାୟ ମଂଚ ଆଉ ଓଡ଼ିଆ ଚଳଚିତ୍ରରେ ଅଭିନୟ କରିବା ପାଇଁ ସକ୍ଷମ ହୋଇ ପାରିଛନ୍ତି ।

ଯେତେଦୂର ମୁଁ ଜାଣେ ନାଟକ ମଂଚସ୍ଥ କ୍ଷେତ୍ରରେ ନୂତନ ସ୍ୱାଦର ନାଟକ ନୂତନ ଶୈଳୀରେ ମଂଚସ୍ଥ କରି କଳାହାଣ୍ଡି ଲେଖକ କଳା ପରିଷଦ କେବଳ ଭବାନୀପାଟଣାରେ ନୁହେଁ ସମଗ୍ର ଓଡ଼ିଶାରେ ଏକ ବୈପ୍ଳବାତ୍ମକ ପଦକ୍ଷେପ ନେଇଛନ୍ତି ବୋଲି କହିଲେ ବିଶେଷ ଅତିଶୟୋକ୍ତି ହେବନାହିଁ । ୧୯୭୧ ସାଲରେ ଏଇ ସଂସ୍ଥା ସ୍ଥାନୀୟ ଲାଲ ବାହାଦୁର ଶାସ୍ତ୍ରୀ ଷ୍ଟାଡ଼ିୟମ ରେ ସମ୍ପୂର୍ଣ୍ଣ ମୁକ୍ତାକାଶ ରଙ୍ଗମଞ୍ଚରେ "ଶବପଡ଼ିଛି" ଓ "ରାତିକୁକୁର" ନାମକ ଦୁଇଟି ନାଟକ ମଂଚସ୍ଥ କରି ନୂତନ ଚିନ୍ତାଧାରା ର ଯେଉଁ ମୂଳଭିତ୍ତି ସ୍ଥାପନ କରି ଯାଇଛି, ଆଗାମୀ ଯୁଗ ପାଇଁ ନାଟକ ଇତିହାସ ରେ ଉକ୍ତ ସଂସ୍ଥାର ନାଁ ଅବିସ୍ମରଣୀୟ ହୋଇ ରହିବ ।

ପରେ ପରେ ଏଇ ମୁକ୍ତାକାଶ ରଙ୍ଗମଞ୍ଚ ଶୈଳୀରେ "ଦ୍ୱ'ଯାତ୍ରୀ" ତାଙ୍କର ସମସ୍ତ ନାଟକ ପରିବେଷଣ କରି ଦୀର୍ଘ ପାଞ୍ଚ ବର୍ଷ ଧରି ବିପୁଳ ଜନ ପ୍ରଶଂସା ଅର୍ଜନ କରି ପାରିଥିଲେ ।

କଳାହାଣ୍ଡି ଲେଖକ କଳାପରିଷଦ ଗତ ଜାନୁୟାରୀ ମାସ ଦଶ ତାରିଖରେ ମୋ ଦ୍ୱାରା ଲିଖିତ ଓ ନିର୍ଦ୍ଦେଶିତ "ହନୁଉପଦ୍ରବ" ନାମକ ଏକ ଭିନ୍ନ ସ୍ୱାଦର ପଥ ପ୍ରାନ୍ତର ନାଟକ ମଂଚସ୍ଥ କରି ଭବାନୀପାଟଣାରେ ଚହଳ ପକେଇ ଦେଇ ପାରିଛି । ଅବଶ୍ୟ ପଥ ପ୍ରାନ୍ତର ନାଟକ ଭାରତ କିମ୍ବା ଓଡ଼ିଶା ପାଇଁ ନୂଆ ନୁହେଁ, ତେବେ କଳାହାଣ୍ଡି ପାଇଁ ନିର୍ଦ୍ଧିତ ଭାବରେ ଯେ ଗୋଟାଏ ନୂଆ ଶୈଳୀ ଓ ପରଂପରା ସୃଷ୍ଟି କରି ପାରିଛି ଏହା ବୁଦ୍ଧିଜୀବି ଗୋଷ୍ଠୀ ନିର୍ଦ୍ଧିତ ଭାବରେ ସ୍ୱୀକାର କରିବେ ।

ଦ୍ୱ'ଯାତ୍ରୀ ନାଟ୍ୟ ସଂସ୍ଥାର ନାଁ ଉଲ୍ଲେଖ ନ କଲେ ବୋଧେ କଳାହାଣ୍ଡିର ନାଟ୍ୟ କଳା ଆଲୋଚନା ନିଶ୍ଚୟ ଅପୂର୍ଣ୍ଣ ରହିଯିବ । ସ୍ମାରକୀ ନାଟ୍ୟସଂସ୍ଥାର ସ୍ଥାଣୁତ୍ୱ ପରେ (ମଝିରେ କିଛି ବର୍ଷ ପାଇଁ) ଶ୍ରୀ ରଥଙ୍କ ନେତୃତ୍ୱରେ କେତେ ଜଣ ଉତ୍ସାହୀ ଯୁବକ ମିଶି ସ୍ଥାପନ କଲେ "ଦ୍ୱ'ଯାତ୍ରୀ" । ଦ୍ୱ'ଯାତ୍ରୀ ନାଟ୍ୟ ସଂସ୍ଥା ୧୯୭୮ ମସିହାରୁ ୧୯୮୩ ସାଲ୍ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବରେ "ସୁବର୍ଣ୍ଣ କଂକଣ", ଯାହା କହିବ, ଶପଥ ଆସନ୍ତାକାଲିର, ସ୍ୱର୍ଣ୍ଣମଞ୍ଜୁଷା, ପି.ଡବ୍ଲ୍ୟୁ.ଡ଼ି. ଛେଳିରୁ ମନ୍ତ୍ରୀ, ସହରରେ ଅଜଗର ଭଳି କେତେକ ଭିନ୍ନ ସ୍ୱାଦର ନାଟକ ଭିନ୍ନ ଶୈଳୀରେ ପରିବେଷଣ କରି ଭବାନୀପାଟଣା ସହରରେ ହଇଚଇ ସୃଷ୍ଟି କରି ପାରିଥିଲେ । ଏଇ ସଂସ୍ଥାର ସର୍ବଶ୍ରୀ ଅବଦୁଲ୍ କଦୀର, ଲକ୍ଷ୍ମୀ ଦତ୍ତ, ସୁରେଶ ସିଂହ, ଚନ୍ଦ୍ର ନାୟକ ପୁରୁଷୋତ୍ତମ ବ୍ରହ୍ମା, କିଶୋର ପାତ୍ର, ଅବ୍ଦୁଲ୍ଲା, ବସନ୍ତ ପଣ୍ଡା, ସତ୍ୟ ମିଶ୍ର ଉମା ବାବୁ, ଗୋବିନ୍ଦ ରଥ, ଉମାକର, ବାବୁଲି ପଟ୍ଟନାୟକ , ବାବୁଲି ପ୍ରଧାନ. ସଂଗ୍ରାମ ହୋତା, ବେଣୁ ମିଶ୍ର, ମଳୟ ମୁଣ୍ଡ, ବସନ୍ତ ପଟ୍ଟନାୟକ ଜାଂକର ବୁରେଇ ଓ ମୋହନ ଲାଲ ଅଗ୍ରୱାଲ ପ୍ରଭୃତି ତରୁଣ ଅଭିନେତା ମାନେ ଅଭିନୟ କ୍ଷେତ୍ରରେ ଯେ ଗୋଟାଏ ଗୋଟାଏ ମାଇଲ ଖୁଣ୍ଟ ଏଥିରେ କୌଣସି ସନ୍ଦେହର ଅବକାଶ ନାହିଁ ।

କଳାହାଣ୍ଡି ଜିଲ୍ଲାର କଳା-ସଂସ୍କୃତି-ସାହିତ୍ୟର ଏକ ନିଷ୍ଠ, ରସାତ୍ମକ ଆଉ ଏକ ମହାନ ପ୍ରଶଂସାତ୍ମକ ଅନୁଷ୍ଠାନ "ମହାବୀର ସାଂସ୍କୃତିକ ଅନୁଷ୍ଠାନ" ଆଜକୁ ପ୍ରାୟ ପାଞ୍ଚ ବର୍ଷ ହେଲା ଓଡ଼ିଶା ସ୍ତରୀୟ କ୍ଷୁଦ୍ର ନାଟିକା ପ୍ରତିଯୋଗିତା କରାଇ କଳାହାଣ୍ଡି ଜିଲ୍ଲା ଭିତରେ ଅନେକ ନୂତନ ନାଟ୍ୟକାର ସୃଷ୍ଟି କରି ପାରିଛନ୍ତି । ସେମାନଙ୍କ ଭିତରେ ସର୍ବଶ୍ରୀ ଅଧ୍ୟାପକ ମନୋଜ ରଥ; ଦୀନବନ୍ଧୁ ଶତପଥୀ, ଦାମ ପଣ୍ଡା, ଉମେଶ ଶତପଥୀ, ମୁରଲୀଧର ବିଶ୍ୱବନ୍ଧୁ ଅନ୍ୟତମ । ଏହା ସହିତ ଅନେକ ନୂଆ ନୂଆ ଅଭିନେତା ମଧ୍ୟ ସ୍ୱକୀୟ ପ୍ରତିଭା ପ୍ରଦର୍ଶନ କରିବାକୁ ସକ୍ଷମ ହୋଇ ପାରିଛନ୍ତି ।

ସେମାନେ ହେଲେ ସୀତାଂଶୁ ମହାପାତ୍ର, ବିଶ୍ୱମୋହନ ମିଶ୍ର (ଟୁଲୁ), ସତ୍ୟ ଠାକୁର, ଆର୍ତ୍ତ ସାହୁ, ରବି ପଣ୍ଡା, ସଂଗ୍ରାମ ହୋତା, ସୁଧିର ରଥ ଓ ସର୍ବୋପରି ପ୍ରବୋଧ ରଥ ଓ ଶୁଭେନ୍ଦୁ ମହାପାତ୍ର ଙ୍କ ନାମ ଉଲ୍ଲେଖ ଯୋଗ୍ୟ । ଉକ୍ତ ସାଂସ୍କୃତିକ ଅନୁଷ୍ଠାନ ଯୁବ ନାଟ୍ୟକାର ସୋହନଲାଲ ଅଗ୍ରୱାଲ ଓ ଅଶୋକ ପାତ୍ର ଙ୍କ ନାଟକ ସବୁ ମଂଚସ୍ଥ କରି ଯଥେଷ୍ଟ ସୁନାମ ଅର୍ଜନ କରିଛନ୍ତି ।

ଏହାଛଡ଼ା ଶ୍ରୀ ଭୋଳାନାଥ ସାହୁ ଙ୍କ ନେତୃତ୍ୱରେ ହାମ ସାହୁ, ଜଗମୋହନ ନାୟକ, ରାଧେ ଅଗ୍ରୱାଲ, ଆଦିତ୍ୟ ପଣ୍ଡା, ଲଳିତ ପଣ୍ଡା, ନିର୍ମଳ ମହାନ୍ତି, ଚନ୍ଦ୍ର ପଟ୍ଟଯୋଷୀ, ଗଗନ ବେହେରା, ଜନ୍ମେଜୟ ପାତ୍ର ଓ ପ୍ରତାପ ମୁଣ୍ଡ ପ୍ରଭୃତି ବିଶିଷ୍ଟ ମଂଚ ଅଭିନେତା ମାନେ ଜୁନାଗଡ଼ ଏବଂ ଧର୍ମଗଡ଼ରେ ପ୍ରାୟ ପ୍ରତିବର୍ଷ ବିଭିନ୍ନ ସଂସ୍ଥାର ଆନୁକୂଲ୍ୟରେ ଭିନ୍ନ ଭିନ୍ନ ନାଟକ ମଂଚସ୍ଥ କରି ନାଟ୍ୟକଳାକୁ ବଂଚେଇ ରଖିଛନ୍ତି ।

ଧର୍ମଗଡରେ ଶ୍ରୀ ପ୍ରତାପ ମୁଣ୍ଡ, ନାରାୟଣ ପାଣିଗ୍ରାହୀ ରାମ ପଣ୍ଡା ଏବଂ କୁମାର ସାହେବ ଯଥାକ୍ରମେ ମଥୁରା ଗୁରବାହଲ ମଦନପୁର ରାମପୁର ସ୍ଥାନରେ ପ୍ରତିବର୍ଷ "ହୋଲି" ଉତ୍ସବରେ ନାଟକ ପରିବେଷଣ କରିବାର ପରଂପରା ରହି ଆସିଛି । ଭବାନୀପାଟଣା ସହରର ମେଡ଼ିକାଲ ନାଟ୍ୟସଂସ୍ଥା, ଅଫିସର୍ସ କ୍ଲବ, ପୋଲିସ୍ କ୍ଲବ ମଧ୍ୟ ବେଳେ ବେଳେ ନାଟକ ପରିବେଷଣ କରି କଳାହାଣ୍ଡି ଜିଲ୍ଲାର ନାଟ୍ୟକଳାକୁ ସମୃଦ୍ଧ କରିବାରେ ଯଥେଷ୍ଟ ସାହାଯ୍ୟ କରି ଆସୁଛନ୍ତି ।

କଳାହାଣ୍ଡି ନିଶ୍ଚିତ ଭାବରେ ଏକ କଳାପୂର୍ଣ୍ଣ ହାଣ୍ଡି, ଏଇ ଜିଲ୍ଲାରେ କଳା-ସଂସ୍କୃତିର ଏକ ଚେତନା ନିଶ୍ଚିନ୍ତ ଭାବରେ ରହିଛି, କିନ୍ତୁ ଉପଯୁକ୍ତ ପ୍ରଚାର ଏବଂ ପ୍ରସାର ଅଭାବରୁ ଏଇ ଜିଲ୍ଲାର କଳା-ସଂସ୍କୃତି ଯେତିକି ପରିମାଣରେ ଇତିହାସ ପୃଷ୍ଠାରେ ସ୍ଥାନ ପାଇବା କଥା ପାଇ ପାରୁନି, ତଥାପି କଳାହାଣ୍ଡି ଆଶାୟୀ ।

ମହା ଶିବରାତ୍ରୀ
ତା ୨୩।୨।୯୦

***

---

୧। [ ଆକାଶ ବାଣୀ; ଜୟପୁର କେନ୍ଦ୍ରରୁ ପ୍ରଚାରିତ ହୋଇଥିବା ପ୍ରବନ୍ଧର ସାମାନ୍ୟ ପରିବର୍ଦ୍ଧିତ କଳେବର । ]

୨। [ କଳାହାଣ୍ଡି ଜିଲ୍ଲାର ସଂସ୍କୃତି ଅଧିକାରୀ ଶ୍ରୀଯୁକ୍ତ ପ୍ରଫୁଲ୍ଲ ସାମନ୍ତରାୟ ଏବଂ କଳାହାଣ୍ଡି ଜିଲ୍ଲାର ବରେଣ୍ୟ ସାହିତ୍ୟିକ ଶ୍ରୀଯୁକ୍ତ ପ୍ରୟାଗ ଦତ୍ତ ଯୋଷୀ ଙ୍କ ଲିଖିତ ପ୍ରବନ୍ଧରୁ କେତେକ ତଥ୍ୟ ସଂଗୃହୀତ । ]


ଡ଼ଃ ମହେନ୍ଦ୍ର କୁମାର ମିଶ୍ର

ଯୁବ ଗବେଷକ ଡକ୍ଟର ମହେନ୍ଦ୍ର କୁମାର ମିଶ୍ର ଓଡ଼ିଶାର ଉପାନ୍ତ ଅଞ୍ଚଳ କଳାହାଣ୍ଡି ଜିଲ୍ଲାର ସିନାପାଲିରେ ନିରନ୍ତର ସାଧନାରତ । 'Folk Songs of Kalahandi', ଓ 'ଲୋକ ସଂସ୍କୃତିବିତ ମାଳକଣ୍ଠ' ପ୍ରକାଶିତ ହେବା ପରେ ଗତବର୍ଷ ତାଙ୍କର 'ପଶ୍ଚିମ ଓଡ଼ିଶାର ଲୋକ ସଂସ୍କୃତି' ପୁସ୍ତକ ପ୍ରକାଶିତ ହୋଇଛି । ପଶ୍ଚିମ ଓଡ଼ିଶାର ଲୋକ ପରମ୍ପରାର କ୍ଷେତ୍ର ଗବେଷଣା ଓ ପ୍ରତ୍ୟକ୍ଷ ପର୍ଯ୍ୟବେକ୍ଷଣ ତଥା ବିଶ୍ଳେଷଣରେ ଋଦ୍ଧିମନ୍ତ ତାଙ୍କର ଏହି ପୁସ୍ତକ ବର୍ତ୍ତମାନ ବହୁ-ଚର୍ଚ୍ଚିତ । ଓଡ଼ିଶାର ସଂସ୍କୃତି ଓ ସାହିତ୍ୟକୁ କଳାହାଣ୍ଡିର ଦାନ ଶୀର୍ଷକ ସନ୍ଦର୍ଭ ଲେଖି ୧୯୮୭ ମସିହାରେ ପି. ଏଚ୍. ଡି. ଉପାଧି ପ୍ରାପ୍ତ ଡକ୍ଟର ମିଶ୍ର ସଂପ୍ରତି ଆଦିବାସୀ ସଂସ୍କୃତି ଗବେଷଣା ପରିଷଦ୍, ସିନାପାଲିର ସଂପାଦକ ।

# କଳାହାଣ୍ଡିର ଆଦିବାସୀ ସଂସ୍କୃତି ଓ ସାହିତ୍ୟ

**ଉପକ୍ରମ—**

ଆଦିବାସୀ ସଂସ୍କୃତି ଭାରତ ଭୂମିର ସର୍ବ ପ୍ରାଚୀନ ସଂସ୍କୃତି । ଏହି ସଂସ୍କୃତିର ବହୁ ଉପାଦାନ ଦ୍ୱାରା ଭାରତୀୟ ସଂସ୍କୃତି ପରିପୁଷ୍ଟ । ଯୁଗ ଯୁଗର ସଂଘର୍ଷ ଓ ସମନ୍ୱୟ ପରେ ଗଠିତ ଭାରତୀୟ ସମାଜ, ଭାଷା ଓ ସଂସ୍କୃତିର ମୂଳରେ ଯେ ଏହି ଆଦିମ ସଭ୍ୟତାର ସ୍ୱାକ୍ଷର ନିହିତ ଏହା ଅବଶ୍ୟ ସ୍ୱୀକାର କରିବାକୁ ହେବ । ସମୟ କ୍ରମେ ଭାରତ ବିଶ୍ୱ ସଭ୍ୟତାର ଅଗ୍ରଗତି ସଂଗେ ତାଳଦେଇ ଆଗେଇ ଚାଲିଛି । କିନ୍ତୁ ଆଜିର ଆଧୁନିକ ଭାରତରେ ଅରଣ୍ୟ ପର୍ବତ ବେଷ୍ଟିତ ଅଞ୍ଚଳରେ ସଂଖ୍ୟାଲଘୁ ଆଦିବାସୀ ସମୁଦାୟ ଭାରତ ଇତିହାସର ମୁଖ୍ୟ ସ୍ରୋତ ଠାରୁ ବିଚ୍ଛିନ୍ନ ରହି ସ୍ୱ ସ୍ୱ ସଂସ୍କୃତି ମଧ୍ୟରେ ପ୍ରଥାସିଦ୍ଧ ରୂପେ ବଂଚି ଆସୁଛନ୍ତି । ଏପରିକି ସେମାନେ ପରିବର୍ତ୍ତନକୁ ସୁଦ୍ଧା ଗ୍ରହଣ କରିପାରୁ ନାହାନ୍ତି । ( ସିହ୍ନା : ୧୯୫୭ : ୯୭ ) ଏହି ପରିପେକ୍ଷୀରେ ଓଡ଼ିଶାର ପଶ୍ଚିମାଞ୍ଚଳର କେତେକ ଆଦିବାସୀ ସଂପ୍ରଦାୟର ସଂସ୍କୃତି ଓ ସାହିତ୍ୟ ସଂପର୍କରେ ଅବହିତ ହୋଇ ସେମାନଙ୍କୁ ଦେଶର ମୁଖ୍ୟ ସ୍ରୋତର ଅଂଶ ବିଶେଷ ରୂପେ ଆଣିବା ଆମ୍ଭର ପ୍ରଧାନ ଲକ୍ଷ୍ୟ ।

ଓଡ଼ିଶାରେ ମୁଖ୍ୟତଃ ତିନୋଟି ଭାଷା ଗୋଷ୍ଠୀର ଲୋକେ ବସବାସ କରିଆସୁଛନ୍ତି । ସେମାନେ ହେଲେ ମୁଣ୍ଡାରୀ ଭାଷା ଗୋଷ୍ଠୀ' ଦ୍ରାବିଡଭାଷା ଗୋଷ୍ଠୀ ଓ ଆର୍ଯ୍ୟ ଭାଷା ଗୋଷ୍ଠୀ । ଏହି ତିନି ଭାଷା ଗୋଷ୍ଠୀର ଅଧିବାସୀ ମାନଙ୍କ ମିଳିତ ଓ ସାଂସ୍କୃତିକ ଆନ୍ତଃକ୍ରିୟାର ଫଳଶ୍ରୁତି ହିଁ ଓଡ଼ିଶାର ସଂସ୍କୃତି । ଓଡ଼ିଶାର ଐତିହାସିକ ଓ ସାଂସ୍କୃତିକ ଭିତ୍ତିଭୂମିରେ ଏହି ଆଦିବାସୀ ଗୋଷ୍ଠୀମାନେ କ୍ରମଶଃ ଆର୍ଯ୍ୟୀକୃତ ହେବାର ପ୍ରକ୍ରିୟା ତଥା ସେମାନଙ୍କ ଠାରୁ ଆଦିବାସୀ ଉପାଦାନର ଉତ୍ସ ସନ୍ଧାନ ଓଡ଼ିଶାର ସଂସ୍କୃତି ଆଲୋଚନା କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ । ( ଗୃହାର୍ଜୀ : ୧୯୬୬ : ୧୧ ) ଦୀର୍ଘ ହଜାର ହଜାର ବର୍ଷର ପ୍ରଜାତିକ, ସାମାଜିକ ଓ ସାଂସ୍କୃତିକ ଆନ୍ତଃକ୍ରିୟା ଫଳରେ ଓଡ଼ିଶାର ସାଂସ୍କୃତିକ ବୈଚିତ୍ର୍ୟ ପରିଲକ୍ଷିତ ହୁଏ । ଏଣୁ ଆମେ ଭାଷାରେ ଆର୍ଯ୍ୟ ହୋଇ ବି ସଂସ୍କୃତିରେ ଦ୍ରାବିଡ଼ ବୋଲି ପଣ୍ଡିତ ମାଳକଣ୍ଠ କହିଛନ୍ତି । ( ଦାସ ମାଳକଣ୍ଠ : ୧୯୭୨ )

**କ୍ଷେତ୍ର ଅଧ୍ୟୟନ**— ପ୍ରସ୍ତୁତ ପ୍ରବନ୍ଧରେ ଓଡ଼ିଶାର ପଶ୍ଚିମାଞ୍ଚଳ ଓ ତତ୍ ସଂଲଗ୍ନ ଆଦିବାସୀ ଗୋଷ୍ଠୀମାନଙ୍କର ସାମାଜିକ ସାଂସ୍କୃତିକ ସ୍ୱରୂପର ସାଧାରଣ ଅଧ୍ୟୟନ କରାଯାଇ ସେମାନଙ୍କର ମୌଖିକ ପରଂପରା ( Oral tradition ) ତଥା ଆଙ୍ଗିକ ଅଭିବ୍ୟକ୍ତି ସଂପର୍କରେ କିଛି ବିଶେଷ ଚର୍ଚ୍ଚା କରାଯାଉଛି । ପଶ୍ଚିମ ଓଡ଼ିଶା ସମେତ ବସ୍ତର ଛତିଶଗଡ଼ର ଆଦିବାସୀ ସଂସ୍କୃତିର ସ୍ୱରୂପକୁ କଳାହାଣ୍ଡି ଲୋକ ସାଂସ୍କୃତିକ ଅଧ୍ୟୟନ

ମଧ୍ୟରେ ସଂଦର୍ଶନ କରାଯାଇ ପାରେ କାରଣ ମଧ୍ୟଭାରତୀୟ ଲୋକ-ସଂସ୍କୃତି ଓ ଓଡ଼ିଆ ଲୋକ ସଂସ୍କୃତିର ମିଳନ ଭୂମି ରୂପେ କଳାହାଣ୍ଡିକୁ ଗ୍ରହଣ କରାଯାଇ ପାରେ ।

ଭାରତୀୟ ସଂସ୍କୃତିର ଏକରୂପତା ଉପଲବ୍‌ଧି ପାଇଁ ରାଜନୈତିକ ମାନଚିତ୍ରର ସୀମା ନିର୍ଦ୍ଧାରଣକୁ ଆଦୌ ଗ୍ରହଣ କରାଯାଇ ନ ପାରେ । ବରଂ ବିଭିନ୍ନ ଆଞ୍ଚଳିକ ସଂସ୍କୃତି ମାନଙ୍କର ପରସ୍ପର ସମ୍ବନ୍ଧାନ୍ୱିତ ଜାଲିକାମ ଦ୍ୱାରା ବିବିଧତା ମଧ୍ୟରେ ଏକତା ଆଦର୍ଶ ମଧ୍ୟରେ ଭାରତୀୟ ସଂସ୍କୃତିର ମହତ୍ତ୍ୱ ପ୍ରକଟିତ । ଏହି ଦୃଷ୍ଟିରୁ ପଶ୍ଚିମ ଓଡ଼ିଶାର କଳାହାଣ୍ଡିକୁ ବିଶେଷ ଅଧ୍ୟୟନର କ୍ଷେତ୍ରରୂପେ ଗ୍ରହଣ କରାଯାଇ ପାରେ ।

କଳାହାଣ୍ଡିର ମୁଖ୍ୟ ଆଦିବାସୀ ସମ୍ପ୍ରଦାୟ ରୂପେ ଗଣ୍ଡ, କନ୍ଧ, ବନଜାରା, ଭତରା, ଭୂଞ୍ଜିଆ, ବିଞ୍ଝାଲ, ଦଲ, ପରଜା, ଶବର, ଶଉରା, ମିର୍ଦ୍ଧା ଓ ମୁଣ୍ଡା ମାନେ ପରିଗଣିତ । ଏହାଛଡ଼ା ସଂଖ୍ୟାଲଘୁ ସଂପ୍ରଦାୟ ରୂପେ ଅନ୍ୟ ୩୨ ପ୍ରକାର ଗୋଷ୍ଠୀ ରହିଛନ୍ତି । କିନ୍ତୁ ସାଂସ୍କୃତିକ ଗଠନ ଦୃଷ୍ଟିରୁ ଉପରୋକ୍ତ ସଂପ୍ରଦାୟ ମାନେ ଗୁରୁତ୍ୱପୂର୍ଣ୍ଣ । (Kuahr DC: : 1980:90)

କଳାହାଣ୍ଡିର ନୂଆପଡ଼ା ସବ୍‌ଡିଭିଜନରେ 'ପହରିଆ' ନାମକ ଏକ ଲଘୁ ସଂପ୍ରଦାୟ ଆବହମାନ କାଳରୁ ରହି ଆସିଛନ୍ତି । ଏମାନଙ୍କୁ ମଧ୍ୟ ପ୍ରଦେଶ ସରକାର ତଫସିଲ ଭୁକ୍ତ ଉପଜାତି ରୂପେ ସ୍ୱୀକୃତି ଦେଇ ଅଛନ୍ତି । କିନ୍ତୁ ଓଡ଼ିଶାରେ ଏଯାବତ୍ ଏମାନଙ୍କୁ ସଂପୃକ୍ତ ଉପଜାତି ରୂପେ ସ୍ୱୀକାର କରାଯାଇ ନାହିଁ । ଫଳରେ ଏମାନେ ଆଜି ପର୍ଯ୍ୟନ୍ତ ଅରଣ୍ୟ ବେଷ୍ଟିତ ଅଞ୍ଚଳରେ ସକଳ ସୁଯୋଗରୁ ବଞ୍ଚିତ ହୋଇ ପ୍ରଥା ସର୍ବସ୍ୱ ରୂପେ ବଞ୍ଚି ଆସୁଛନ୍ତି । ( ମିଶ୍ର : ୧୯୮୬ : ୨୨ )

## ଆର୍ଥିକ - କାରିଗରୀ ଭିତ୍ତିରେ ଶ୍ରେଣୀ ବିଭାଜନ ଓ ଆନ୍ତଃକ୍ରିୟା —

କଳାହାଣ୍ଡିର ଆଦିବାସୀ ଗୋଷ୍ଠୀ ମାନଙ୍କୁ ମୁଖ୍ୟତଃ ନିମ୍ନ ତିନୋଟି ଶ୍ରେଣୀରେ ଆର୍ଥିକ ଭିତ୍ତିରୁ ବିଭକ୍ତ କରାଯାଇପାରେ । ଯଥା :—

କ) ଆଦିମ ସମାଜ — କେବଳ ଆଦିବାସୀ ଗୋଷ୍ଠୀ ରହିଛନ୍ତି । ଗଣ୍ଡ, କନ୍ଧ, ଭୂଞ୍ଜିଆ (ଚୁକ୍ତିଆ) ଡଂଗ୍ରିଆ, ପହରିଆ, କୁଟିଆ, ଜୋଡ଼ିଆ ପରଜା, କନ୍ଧ ପରଜା, ବୃତ୍ତି - ଶିକାର ଜଙ୍ଗଲ ଜାତ ଦ୍ରବ୍ୟ ସଂଗ୍ରହ ବିନିମୟ ଖାଦ୍ୟ ସଂଗ୍ରହକାରୀ ତଥା ପୋଡ଼ୁଚାଷ, ଯାଯାବର ଜୀବନ, ପ୍ରଥା ସର୍ବସ୍ୱ ।

ଖ) କୃଷି ଭିତ୍ତିକ ସମାଜ— ଶବର, ଗଣ୍ଡ, କନ୍ଧ, ଭୁଞ୍ଜିଆ (ଚିନ୍ଧା) ଶହରା, ଭତରା, ବଡ଼ ପରଜା, ମିର୍ଦ୍ଧା, ବନଜାରା, ବିଞ୍ଝାଲ ପ୍ରମୁଖ ( ସହାବସ୍ଥାୟୀ- କାରିଗରୀ ଜାତି, ବ୍ରାହ୍ମଣ, କରଣ, ମୁସଲମାନ, ମାରୁଆଡ଼ି )

ଗ) ପୌରାଞ୍ଚଳ— ସଂଖ୍ୟାଲଘୁ ଗଣ୍ଡ ଓ କନ୍ଧ । ରଜା ବ୍ରାହ୍ମଣ, କ୍ଷତ୍ରୀୟ, କରଣ ଓ ଆଗନ୍ତୁକ ବହୁଜାତି ।

**ଆଦିମ ସମାଜ** — ପ୍ରାକୃତିକ ପରିବେଶ ଅନୁସାରେ ଆଦିମ ସମାଜ ଅନ୍ତର୍ଗତ ଗୋଷ୍ଠୀମାନେ ଜୀବିକା ନିର୍ବାହ କରନ୍ତି । ମାଛ ଧରିବା, ଫଳ ମୂଳ ସଂଗ୍ରହ, ଶିକାର, ଜଂଗଲ ଜାତ ଦ୍ରବ୍ୟ ସଂଗ୍ରହ କରିବା ତଥା ଡମ୍ବ କୋଚିଆ (ମଧ୍ୟସ୍ଥ) ମାନଙ୍କ ଠାରେ ସେ ଗୁଡ଼ିକୁ ଦ୍ରବ୍ୟ ବିନିମୟରେ ବିକ୍ରୟ କରିବା ଏହି ପ୍ରକାର ଗୋଷ୍ଠୀ ମାନଙ୍କର ମୁଖ୍ୟ ଜୀବିକା । ଏମାନେ ପ୍ରାୟତଃ ଗ୍ରାମାଞ୍ଚଳକୁ ଆସନ୍ତି ନାହିଁ । ସହରାଞ୍ଚଳକୁ ଆସିବାର ପ୍ରଶ୍ନ ଉଠେନାହିଁ । ଭୁଂଜିଆମାନେ ଡିଖୁର (ଏକ ପ୍ରକାର କନ୍ଦମୂଳର ଗୁଣ୍ଡ) ପାଳୁଅ; ମହୁ, ଝୁଣା, ଅଠା ସଂଗ୍ରହ କରନ୍ତି, ପହରିଆ ମାନେ ବାଉଁଶ ଟୋକେଇ, କୁଲା, ପାଛିଆ ତିଆରି କରି କୋଚିଆ (ଡମ୍ବ ଜାତିର ସ୍ତ୍ରୀ ଓ ପୁରୁଷ ଯେଉଁମାନେ ଶସ୍ତାରେ ବାଉଁଶ ଉପକରଣ କିଣି ଚଢ଼ା ଦରରେ ହାଟରେ ବିକନ୍ତି) ମାନଙ୍କ ପାଖରେ ବିକନ୍ତି । ଚୁକ୍ତିଆ ଓ ପହରିଆମାନେ ଏବେ ପଇସାର ବ୍ୟବହାର ଜାଣିଛନ୍ତି । କୁଟିଆ ଓ ଡଂଗ୍ରିଆମାନେ ବି ମହୁ, କାନ୍ଦୁଲ, ସଲପ, ଆମ୍ବ ଟାକୁଆ ଗୁଣ୍ଡ, ଶାଳ ମଞ୍ଜି ପ୍ରଭୃତି ଜଂଗଲଜାତ ଦ୍ରବ୍ୟ ସଂଗ୍ରହ ଓ ବିକ୍ରୟକରି ଜୀବିକାର୍ଜ୍ଜନ କରନ୍ତି । ଜଂଗଲରେ ଡାଲୁ ସ୍ଥାନ ଦେଖି ପୋଡ଼ୁଚାଷ କରନ୍ତି । କାଙ୍ଗ, କଣଲ, କୋଦୋ, ମାଣ୍ଡିଆ, ଗୁର୍‌ଜି, କାନ୍ଦୁଲ, ସୁଆ ପ୍ରଭୃତି ଶସ୍ୟ ଉତ୍ପାଦନ କରି ଜୀବିକା ନିର୍ବାହ କରନ୍ତି ।

**କୃଷି ଭିତ୍ତିକ ସମାଜ**— ସଂଖ୍ୟା ଗରିଷ୍ଠ ଆଦିବାସୀ ଗୋଷ୍ଠୀ-ମାନେ ସାମାଜିକ ପ୍ରତିଷ୍ଠା ଅନୁସାରେ ବିଶାଳ ଭୂ ଭାଗର ଅଧିକାରୀ ହୋଇ ଗ୍ରାମୀଣ ମୁଖ୍ୟ, ଅଞ୍ଚଳର ମୁଖ୍ୟ ତଥା ଶାସକ ମୁଖ୍ୟ ହେବାର ପ୍ରମାଣ ରହିଛି । ସେହି ମାନଙ୍କର ଅଂଶ ବିଶେଷ ରୂପେ ସମତଳ ଅଞ୍ଚଳର କୃଷିଭିତ୍ତିକ ସମାଜ ଗଠିତ । ଜଙ୍ଗଲ ଉପରେ ବର୍ଷର ଅଧେ କାଳ ନିର୍ଭର କରି ତଥା ଅନ୍ୟ ସମୟତକ କୃଷି ଗୋପାଳନ କରି ସ୍ଥାୟୀ ଭାବେ ବସବାସ

କରୁଥିବା ଆଦିବାସୀ ଗୋଷ୍ଠୀଙ୍କ ସଂଖ୍ୟା ସଂପ୍ରତି କଳାହାଣ୍ଡିରେ ସର୍ବାଧିକ । ଏହି ଗୋଷ୍ଠୀ ମାନଙ୍କ କୃଷି ଉତ୍ପାଦନ ଓ ଦ୍ରବ୍ୟ ବିନିମୟ ସାପ୍ତାହିକ ହାଟରେ ହୁଏ ତଥା ୨୦।୩୦ଟି ଗ୍ରାମର କେନ୍ଦ୍ର ରୂପେ ଏକ ବଡ ବ୍ୟବସାୟ କେନ୍ଦ୍ର ରୂପେ ଗ୍ରାମଟିଏ ରହିଥାଏ । (ଏହି ଗ୍ରାମାଞ୍ଚଳ ମାନଙ୍କରେ ମୂଳତଃ ଆଦିବାସୀ ଗ୍ରାମୀଣ ମୁଖ୍ୟ ପରମ୍ପରା କ୍ରମେ ରହି ଆସିଥିଲେ । କିନ୍ତୁ ରାଜନ୍ୟବର୍ଗଙ୍କ ଦ୍ୱାରା ସାହାଯ୍ୟ ପ୍ରାପ୍ତ ବ୍ରାହ୍ମଣ, କୁଲତା ଓ ମୁସଲମାନମାନେ ମୂଳ ଆଦିବାସୀ ମାନଙ୍କଠାରୁ ଗଉନ୍ତିଆ କ୍ଷମତା ନେଲେ । ଫଳରେ ଗଣ୍ଡ, କନ୍ଧ, ଶବର ପ୍ରଭୃତି ଗଉନ୍ତିଆ-ମାନେ ନିଜ ନିଜ ଭୂମି ହରାଇଥିଲେ । ଏହାର ଫଳଶ୍ରୁତି କନ୍ଧ ମେଳି ) ।

କୃଷି ଗୋପାଳନ ସହ ବଢେଇ, ଲୋହରା, କୁମ୍ଭାର, ତନ୍ତୀ, ଭୁଲିଆ ପ୍ରମୁଖ କର୍ମକାର ଗୋଷ୍ଠୀ ଗ୍ରାମମାନଙ୍କରେ ସହାବସ୍ଥାୟୀ ଜାତି ରୂପେ ରହି ଆସିଛନ୍ତି । ପୌରାଞ୍ଚଳକୁ ଉତ୍ପାଦନ ପ୍ରେରଣ କରିବାରେ ଗ୍ରାମ- ଅର୍ଥନୀତିର ମଧ୍ୟସ୍ଥିତା କାର୍ଯ୍ୟ କରେ ।

**ପୌରାଞ୍ଚଳ—** ରାଜା, ବ୍ରାହ୍ମଣ, ସାମନ୍ତ ତଥା ସୁବିଧା ଉପଭୋଗୀ ବର୍ଗ ପୌରାଞ୍ଚଳରେ ରହନ୍ତି । କଳାହାଣ୍ଡିର ଭବାନୀପାଟଣା, ଜୁନାଗଡ଼, ଖଡ଼ିଆଳ, ଜୟପାଟଣା, ରାମପୁର ପ୍ରମୁଖ ରାଜ୍ୟ ମାନଙ୍କରେ ଆଦିବାସୀ ଗୋଷ୍ଠୀ ଯେ ଆଦୌ ନଥିଲେ ତାହା ନୁହେଁ ବରଂ ବ୍ରାହ୍ମଣ୍ୟ ଅନୁପ୍ରବେଶ ପୂର୍ବରୁ ଏମାନେ ଥିଲେ ସ୍ଥାନୀୟ ରାଜାମାନଙ୍କର ଧର୍ମ ପୁରୋହିତ । ସଂପ୍ରତି ଆଦିବାସୀ ଗୋଷ୍ଠୀର ଲୋକେ ସହରରେ ରହି ନିଜର ପ୍ରଜାତିକ ସଂସ୍କୃତି ହରାଇ ସହରୀ ସଂସ୍କୃତି ଦ୍ୱାରା ପ୍ରଭାବିତ ।

ଆଦିମ କୃଷି ଭିତ୍ତିକ ସମାଜ ଓ ପୌରାଞ୍ଚଳର ଆର୍ଥିକ ଆଦାନ ପ୍ରଦାନ ସୂତ୍ରରୁ ସାଂସ୍କୃତିକ ଆଦାନ ପ୍ରଦାନ ଓ ଆନ୍ତର୍ନିର୍ଭରତା ସମାହିତ । କଳାହାଣ୍ଡିର ୯୫ ପ୍ରତିଶତ ଗ୍ରାମାଞ୍ଚଳ ତଥା ୭୫ ପ୍ରତିଶତ ଜାତି ଓ ଜନ ଜାତି ସମସ୍ତେ ପ୍ରାୟ ଗ୍ରାମୀଣ ସଂସ୍କୃତିରେ ସହଭାଗିତା ରଖୁଥିବା ହେତୁ ଏହି ଅଞ୍ଚଳର ଆଦିବାସୀ ଓ ଅଣଆଦିବାସୀ ସଂସ୍କୃତିର ସାମଞ୍ଜସ୍ୟ ଅଧିକ । ଏପରିକି ବ୍ରାହ୍ମଣ, ପାଇକ, କରଣ ପ୍ରଭୃତି ଜାତି ଯେଉଁମାନେ କୃଷିଭିତ୍ତିକ ସମାଜରେ ରହନ୍ତି- ଲୌକିକ ସଂସ୍କୃତିର ପ୍ରଭାବରେ tribalized ହୋଇଥିବାର ପ୍ରମାଣ ରହିଛି ।

**ପ୍ରଜାତି ସଂଗଠନ —** ସଂଖ୍ୟା ଦୃଷ୍ଟିରୁ ତଥା ସାମାଜିକ ପ୍ରସ୍ଥିତି ଦୃଷ୍ଟିରୁ ଗଣ୍ଡ ଓ କନ୍ଧମାନେ ହିଁ ଆଲୋଚ୍ୟ ଅଞ୍ଚଳରେ ମୁଖ୍ୟ ସଂପ୍ରଦାୟ । ଏମାନଙ୍କୁ ମୁଖ୍ୟ ନିର୍ଦ୍ଦେଶ ଦଳ ରୂପେ ସେମାନଙ୍କ ଉପଜାତିମାନେ ମାନି ଆସୁଛନ୍ତି । ଗଣ୍ଡମାନଙ୍କ ଠାରୁ ଭୁଂଜିଆ, ପରଧନିଆ, ପହରିଆ, ବୈଗା, ଭତରା, ପରଜା, ପ୍ରଧାନ, ଭୀମା, ଜୈଗା, ଅଗରିଆ ପ୍ରମୁଖ ସଂପ୍ରଦାୟ ସୃଷ୍ଟି ଏଣୁ ଏମାନେ ଗଣ୍ଡ ଉପଜାତି ରୂପେ ପରିଚିତ । କନ୍ଧ ମାନଙ୍କଠାରୁ କନ୍ଧ ପରଜା, କୁଟିଆ, ଡଂଗ୍ରିଆ, ଜୋରା, କନ୍ଧ-ଗଉଡ, ବଡ଼ ପରଜା ପ୍ରମୁଖ ସୃଷ୍ଟି ବୋଲି ସେମାନଙ୍କ ଠାରୁ ଜଣାଯାଏ । ସଂପୃକ୍ତ ସଂଖ୍ୟା ଲଘୁ ସଂପଦାୟର ସଂସ୍କୃତି ଗଣ୍ଡ ଓ କନ୍ଧ ସଂସ୍କୃତି ଦ୍ୱାରା ପ୍ରଭାବପୁଷ୍ଟ ।

ମଧ୍ୟଭାରତୀୟ ଗଣ୍ଡମାନଙ୍କର 'ଆଠିସଗା' ବା ଆଠଟି ବର୍ଗ ରହିଛି । ଏକ ମୂଳ ଆଦି ପୁରୁଷଙ୍କ ଠାରୁ ଏମାନେ କ୍ରମ ବିଭାଜିତ ହୋଇ ଆଠ ବର୍ଗ ରୂପେ ବିଭିନ୍ନ ଅଞ୍ଚଳରେ ବସତିତ । ପ୍ରତ୍ୟେକ ବର୍ଗର ସ୍ୱତନ୍ତ୍ର ଗଡ଼, ଇଷ୍ଟ ଦେବତା, ଧାମ, ଦୀପ, ଗୋତ୍ର ସନ୍ତକ ତଥା ସ୍ଥାନ ଆଦିରହିଛି । ମଧ୍ୟଭାରତରେ ନବମ ଶତାବ୍ଦୀରୁ ଇଂରେଜ ଶାସନ ପର୍ଯ୍ୟନ୍ତ ଗଣ୍ଡ ମାନେ ହିଁ ଶାସନ ମୁଖ୍ୟ ଥିଲେ ।

ନିମ୍ନୋକ୍ତ ପୃଷ୍ଠାରୁ ସେମାନଙ୍କ ବର୍ଗ ବିଭାଜନ କ୍ରମ ଓ ମଧ୍ୟ ଭାରତରେ ସେମାନଙ୍କ ବିସ୍ତୃତ ସ୍ପଷ୍ଟ ହେବ ।

— ଆଠଘରା —

| ବଂଶ | ପୂର୍ବ ପୁରୁଷ | ଛତ୍ର | ଗୋତ୍ର | ସ୍ଥାନ | ଦେବତା ଓ ଧାମ |
|---|---|---|---|---|---|
| ଗଙ୍ଗ | ପଣ୍ଡିତ ମାଡଲ୍ | କନକ ଡ଼ାବର | କଇଶପ | ଲାଞ୍ଜିଗଡ଼ | ଗୁରୁଦେବ ଗୁରୁଧାମ |
| ଗାଗ୍ରନ | ବୁଢ଼ା ଦେଓ | ମେଘ | ନାଗେଶ୍ୱର | ଶ୍ରେଷ୍ଠ ନାଗପୁର | ସପ୍ତଦେବ |
| ଯଦୁ | ଚେଲୁଭୁର୍ଜ | ଝିପନ | ଅନନ୍ତ | ଲୁହାଗଡ଼ | ତିନ ଦେବତା |
| କଦମ୍ | ସୁମାଡଲ୍ | ଉଡ଼େନ୍ | କାଶ୍ୟପ | ଧମଳାଗଡ଼ | ତିନପତ୍ର ତିନ ଧାମ |
| ସଅନ | ଭଦ୍ରେଶିଆ | ବାଜୁବନ୍ଧ | ବଶିଷ୍ଠ | ବିରାଟଗଡ | ପଞ୍ଚ ଦେବତା |
| ସୂର୍ଯ୍ୟ | ଜଂଗା ଦେଓ | ଦ୍ୱାରପାଳ | ପାରେଶ୍ୱର | ଦେବଗଡ ଗୁଳା | ଷଡ଼ ଦେବତା |
| ବଘେଲ୍ | ଭାଜୁଆ ଦେଓ | ଲକ୍ଷ୍ମୀ | କୁଶପର | ଆଗ୍ରାଗଡ | ତିନପତ୍ରୀ ତିନ ଧାମ |
| ସୋମ | ଲିଂଗା ଦେଓ | ଦ୍ୱାରପାଲ୍ | ନାଗଣ | ଦ୍ୱାରଗଡ଼ | ଷଡ଼ପତ୍ରୀ ଷଡ଼ଧାମ |

ସମସ୍ତ ଦକ୍ଷିଣ ପଶ୍ଚିମ ଭାରତରେ କନ୍ଧ ସଂପ୍ରଦାୟର ସଂଖ୍ୟା ଗରିଷ୍ଠତା ରହିଛି । ପ୍ରବାଦ ଅଛି ଯେ, 'ଗଣ୍ ଆରୁ କନ୍ଦ୍ ମା ମଉସୀର ପୋ' ଅର୍ଥାତ ବଡ ଭଉଣୀର ପୁଅ ଗଣ୍ଡ ଓ ସାନ ଭଉଣୀର ପୁଅ କନ୍ଧ । କନ୍ଧ ମାନେ ୩ ପ୍ରକାର । ଦେଶିଆ ବା କଛରିଆ କନ୍ଧ, କୁଟିଆ କନ୍ଧ ଓ ଡଂଗ୍ରିଆ କନ୍ଧ । କଳାହାଣ୍ଡି ଓ ବଲାଙ୍ଗୀରରେ ଦେଶିଆ କନ୍ଧମାନଙ୍କ ସଂଖ୍ୟା ସର୍ବାଧିକ । କନ୍ଧମାନଙ୍କର ମୂଳତଃ ଛଅଟି ବର୍ଗ ରହିଛି । ଯଥା ଗଙ୍ଗ, ଗାଗ୍ରଂ, ଯଦୁ, କଦମ୍; ରେଣ୍ଟେକା ଓ ଚେଣ୍ଟେକା । ଏହି ଛଅଟି ମୂଳ ବର୍ଗରୁ ଶତାଧିକ ବର୍ଗର ସୃଷ୍ଟି ହୋଇଅଛି । ବର୍ଗ ଅନୁସାରେ ଏମାନଙ୍କ ଭୂମି ବା ଚକ ନିର୍ଦ୍ଧିତ/ବିଭାଜିତ ହୋଇ ଥାଏ । ଦେଶିଆ କନ୍ଧମାନେ ନିଜକୁ କୁଟିଆ ଓ ଡଙ୍ଗରିଆ ମାନଙ୍କ ଠାରୁ ଉଦ୍‌ଭବ ହୋଇଛନ୍ତି ବୋଲି ସେମାନେ ବିଶ୍ୱାସ କରନ୍ତି । ଭାଷା କ୍ଷେତ୍ରରେ ମଧ୍ୟ ଏମାନଙ୍କର ପାର୍ଥକ୍ୟ ରହିଅଛି । କନ୍ଧ, ଗଣ୍ଡ ସଂପ୍ରଦାୟ ପ୍ରଥମେ ପଶ୍ଚିମ ଓଡ଼ିଶାରେ ଶାସକ ହୋଇ ରହିଥିଲେ ଓ ସେମାନଙ୍କ ଠାରୁ ନାଗ ଓ ଚୌହାନମାନେ ରାଜ୍ୟ ପାଇଥିଲେ ।

ଏହି ଅଞ୍ଚଳରେ ଶବର ମାନଙ୍କର ଗୋତ୍ର ବାର ପ୍ରକାର । କିନ୍ତୁ ସମଗ୍ର ପଶ୍ଚିମ ଓଡ଼ିଶାର ଶବରମାନେ ନିଜ ଭାଷା ବିସ୍ମୃତ ହୋଇ ସାରିଲେଣି । ଚଳଣିରେ ଯାହା କିଛି ପ୍ରଜାତିକ ସଂସ୍କୃତିର ଅବଶେଷ ରହି ଯାଇଅଛି । ଏମାନେ ମଧ୍ୟ ରାଜନ୍ୟ ପରଂପରାଶ୍ରିତ ହୋଇ ଅନେକ ଗ୍ରାମରେ ଗଉନ୍ତିଆ ପଦବୀ ପ୍ରାପ୍ତ ହୋଇଥିଲେ । ଶହରାମାନେ ଶବରମାନଙ୍କ ଉପଜାତି ଏମାନଙ୍କର ପାଞ୍ଚୋଟି ବର୍ଗ ରହିଛି ।

ପରଜାମାନେ କଳାହାଣ୍ଡିରେ ଚାରି ପ୍ରକାର । ସେମାନେ ବଡ ପରଜା, ଜୋଡ଼ିଆ ପରଜା, ଛେଲିଆ ପରଜା ଓ କନ୍ଧ ପରଜା ରୂପେ ପରିଚିତ । ବଡ ପରଜାମାନେ ଅନ୍ୟ ପରଜାମାନଙ୍କ ଠାରୁ ପ୍ରତିଷ୍ଠିତ ଦୃଷ୍ଟିରୁ ଉଚ୍ଚରେ ।

ପଶ୍ଚିମ ଭାରତରୁ ମହାରାଷ୍ଟ୍ର ଦେଇ ମଧ୍ୟଭାରତକୁ ବିସରିତ ହୋଇ ଆସିଥିବା ବନଜାରା ସଂପ୍ରଦାୟ କଳାହାଣ୍ଡିରେ ମଧ୍ୟ ବସତି ସ୍ଥାପନ କରିଛନ୍ତି । ଏମାନେ ବଣିକ ଜାତି । ଲୁଣ ବେପାର କରିବା ଏମାନଙ୍କ ମୁଖ୍ୟ ଜୀବିକା । ତା ଛଡ଼ା ଏମାନେ ଏବେ ସ୍ଥାୟୀ କୃଷି ଭିତ୍ତିକ ସମାଜ ଗଠନ କରିଛନ୍ତି । କାଂଖାଲମାନେ ମଧ୍ୟଭାରତରୁ ସମ୍ବଲପୁର ଓ କଳାହାଣ୍ଡି ଅଞ୍ଚଳରେ ପରିବ୍ୟାପ୍ତ । ଏମାନଙ୍କର ଚାରୋଟି ବର୍ଗ ରହିଅଛି ।

ଗଣ୍ଡମାନଙ୍କର ଏକ ପ୍ରମୁଖ ଜନଜାତି ରୂପେ ଭତରାମାନେ କଳାହାଣ୍ଡି,କୋରାପୁଟ ଓ ବସ୍ତରଅଞ୍ଚଳରେ ପରିବ୍ୟାପ୍ତ । ଏମାନେ ଖଣ୍ଡ ଉପଜାତି ତେଣୁ ପ୍ରବାଦ ଅଛି, 'ଗଣ ଭତରା ଯୁଏ ଅଁତରା' । ଅର୍ଥାତ୍ ନିଆଁ ଶାଳ ସହିତ ନିଆଁ ଯେପରି ଅଭିନ୍ନ ଭତରା ସେହିପରି ଗଣ୍ଡମାନଙ୍କ ଠାରୁ ଅଭିନ୍ନ । ଦଳ ଓ ମିର୍ଦ୍ଧାମାନେ ସେହିପରି କୃଷିଭିତ୍ତିକ ସମାଜର ପ୍ରତିନିଧି ରୂପେ ରହି ଆସିଛନ୍ତି ।

କଳାହାଣ୍ଡି ପ୍ରଥାସର୍ବସ୍ୱ ଓ ରକ୍ଷଣଶୀଳ ଆଦିବାସୀ ସଂପ୍ରଦାୟ ରୂପେ ଭୁଂଜିଆ ଓ ପହରିଆ ଅନ୍ୟତମ । ଭୁଂଜିଆମାନେ କେବଳ ପଶ୍ଚିମ କଳାହାଣ୍ଡିର କାଠପାର ସୁରୁବାଘ ପର୍ବତମାଳା ଓ ମଧ୍ୟପ୍ରଦେଶର ବିନ୍ଦ୍ରା ନୂଆଗଡ଼ ଅଞ୍ଚଳରେ ଦେଖାଯାନ୍ତି । ସେମାନେ ୨ ପ୍ରକାର । ପର୍ବତ ଓ ଅରଣ୍ୟ ମଧ୍ୟରେ ପ୍ରଥାସର୍ବସ୍ୱ ରୂପେ ରହିଥିବା ଭୁଂଜିଆମାନଙ୍କୁ 'ଚୈକଟିଆ' ତଥା ସମତଳବାସୀ କୃଷି ଭିତ୍ତିକ ଭୁଂଜିଆମାନଙ୍କୁ 'ଚିନ୍ଦା' କୁହାଯାଏ । କଳାହାଣ୍ଡିର ଏକ ଆଦିମ ଓ ପ୍ରାଚୀନତମ ଜନଜାତି ରୂପେ ଭୁଂଜିଆମାନଙ୍କୁ ଏବେ ସୁଦ୍ଧା (ଚଳଣି ଦୃଷ୍ଟିରୁ) ଗ୍ରହଣ କରାଯାଇପାରେ । ପହରିଆମାନେ ସୋରା/ନେତାମ ବର୍ଗରେ ବିଭକ୍ତ । ଏମାନଙ୍କୁ ମୁଖ୍ୟତଃ ଯାଯାବର ଓ ଖାଦ୍ୟ ସଂଗ୍ରହକାରୀ ଗୋଷ୍ଠୀ ରୂପେ ଏବେ ସୁଦ୍ଧା ପ୍ରତ୍ୟକ୍ଷ କରାଯାଇଥାଏ । (Kuanr : 1980 : 90)

**ଭାଷା :—** ଏହି ଅଞ୍ଚଳରେ ସମସ୍ତେ ଆଞ୍ଚଳିକ ଓଡ଼ିଆ କହିବା ବେଳେ 'ଭତରୀ' ଭାଷାର ପ୍ରଭୂତ ପ୍ରଭାବ ରହିଅଛି । ସମତଳ ଅଞ୍ଚଳର ଆଦିବାସୀମାନେ ପ୍ରାୟ ଦ୍ୱିଭାଷୀ । ଘରେ ନିଜ ଗୋଷ୍ଠୀର ଭାଷା ତଥା ବାହାରେ ଆଞ୍ଚଳିକ ଓଡ଼ିଆ ଭାଷା କହନ୍ତି । ଗଣ୍ଡମାନେ ଆଉ ଗୋଣ୍ଡିଭାଷା କହନ୍ତି ନାହିଁ, ଜାଣନ୍ତି ନାହିଁ । ଲରିଆ ଗଣ୍ଡମାନେ ଲରିଆ ଭାଷା କହନ୍ତି । ସମତଳର ଦେଶିଆ କନ୍ଧମାନଙ୍କ କୁଇ ଭାଷା, କୁଟିଆ ଓ ଡଂଗ୍ରିଅଙ୍କ କୁଇଠାରୁ ଭିନ୍ନ । କୁଟିଆ ଓ ପରଜାମାନଙ୍କର କୁଇ ଓ ପରଜା ଭାଷା ଦ୍ରାବିଡ ତେଲୁଗୁ ଭାଷାର ନିକଟବର୍ତ୍ତୀ । ବନ୍‌ଜାରା ମାନଙ୍କର ସ୍ୱତନ୍ତ୍ର ଭାଷା ରହିଅଛି । ଭୁଂଜିଆ ଓ ପହରିଆମାନେ ହାଲବୀ ଛତିଶଗଡ଼ୀ ମିଶ୍ରିତ ଓ ଆଞ୍ଚଳିକ ଓଡ଼ିଆ ମିଶ୍ରିତ ଏକ ମଧୁର ଉପଭାଷା କହିଥାନ୍ତି । ପ୍ରତ୍ୟେକ ଗୋଷ୍ଠୀର ମୌଖିକ ପରଂପରା ଆଞ୍ଚଳିକ ଓଡ଼ିଆ ସଂସ୍କୃତି ଦ୍ୱାରା ପୁଷ୍ଟ ।

**ପାରିବାରିକ ସଂଗଠନ :—** ଏହି ଅଞ୍ଚଳର ଆଦିବାସୀ ସଂପ୍ରଦାୟର ୮୫ ପ୍ରତିଶତ ନ୍ୟଷ୍ଟି ପରିବାର ଗଠନ କରିଥାନ୍ତି । ବିବାହ ପରେ ପୁଅ ନିଜ ପତ୍ନୀ ସହ ପିତାମାତାଙ୍କ ଠାରୁ ଅଲଗା ରହେ । ଆର୍ଥିକ ସ୍ଥିତି ବର୍ଦ୍ଧନ ପାଇଁ ସ୍ତ୍ରୀର ଭୂମିକା ବି ଗୁରୁତ୍ୱପୂର୍ଣ୍ଣ । କାରଣ ପୁରୁଷର ସକଳ ଶ୍ରମରେ ସ୍ତ୍ରୀ ମଧ୍ୟ ଭାଗ ନେଇଥାଏ । ଆଦିବାସୀ ସଂପ୍ରଦାୟରେ ୯।୧୦ ବର୍ଷରୁ ୧୪ ବର୍ଷର ବାଳକ ବାଳିକାମାନେ ଛେଳି ମେଣ୍ଢା, ଗାଈ ଗୋରୁ ଚରାଇବା ସଙ୍ଗେ ସଙ୍ଗେ ଧାନ ଓ ରବି ଫସଲ ଜଗିବା, ଘର ଜଗିବା କାର୍ଯ୍ୟ କରନ୍ତି । କେନ୍ଦୁପତ୍ର, ମହୁଲ, ଚାର, ତେଲିବାକୁ ଯା'ନ୍ତି । ଫଳରେ ଶିକ୍ଷା କ୍ଷେତ୍ରରେ ଏହିମାନେ ଅନଗ୍ରସର ।

**ବିବାହର ପ୍ରକାର :—** ଯୌନ ସଂପର୍କରେ ବିବିଧତାକୁ ନେଇ ଏହି ଅଞ୍ଚଳରେ ଆଦିବାସୀ ସଂପ୍ରଦାୟରେ ଏକବିବାହୀ ପରିବାର ତଥା ବହୁପତ୍ନୀକ ପରିବାର ଦେଖାଯାନ୍ତି । ବାଲ୍ୟବିବାହ ବହୁବିବାହ, ବିଧବା ବିବାହ ତଥା ଅସ୍ୱୀକୃତ ଗାନ୍ଧର୍ବ ବିବାହ ବି ହୁଏ । ଏହି ଅଞ୍ଚଳରେ ଏକରୈଖିକ ବଂଶର ଆଧାରରେ ଗଠିତ ପିତୃବଂଶୀୟ ପରିବାରର ଏକତା ରକ୍ଷା ପାଇଁ brirate ଓ Sarorate ବିବାହ ହୋଇଥାଏ । କଳାହାଣ୍ଡିର ଆଦିବାସୀ

ସଂପ୍ରଦାୟରେ ସ୍ୱଗୋତ୍ରୀୟ ବିବାହ ନାହିଁ ଏଣୁ ଏକ ପକ୍ଷୀୟ ଓ ଉଭୟ ପକ୍ଷୀୟ ବିଳଂଗ ସହୋଦରଜ ସନ୍ତାନ ବିବାହ ( Cross cousin marriage) ରହିଛି । ମାମୁଁ ଝିଅ ଉପରେ ଭଣଜାର ପୂର୍ଣ୍ଣ ଅଧିକାର । ଏଣୁ ପ୍ରବଚନ ରହିଛି – ମାମୁଁର ଝି ଗୁଡ଼ ଘି । ମାମୁଁ ଝିଅ ଗୁଡ ଘିଅ ପରି ଗ୍ରହଣୀୟ ।

ପ୍ରତ୍ୟେକ ସଂପ୍ରଦାୟରେ ବିବାହ ପାଇଁ ବର ପକ୍ଷରୁ କନ୍ୟାପିତାଙ୍କୁ ହରଜା ବା ଜୋଲା (bride price) ଦେଇ କନ୍ୟାକୁ ଆଣି ବର ଘରେ ବିବାହ କରାଇବା ସାଧାରଣ ପ୍ରଥା । ଏହା ଛଡ଼ା କନ୍ୟା ଘରେ ପୁଅ ନଥିଲେ କନ୍ୟାପିତା ନିଜ ରୁଚି ମୁତାବକ ଘରଜୋଇଁଟିଏ ରଖିବା ପ୍ରଥା ରହିଅଛି ।

ଯୁବକ ଯୁବତୀ ପରସ୍ପର ଭଲପାଇ ବିବାହ କରିବାକୁ ଚାହିଁଲେ ମଧ୍ୟ କନ୍ୟାପିତା ପକ୍ଷରୁ ଅସ୍ୱୀକୃତ ଥିଲେ ଉଭୟେ ଲୁଚି ପଳାଇଯାଆନ୍ତି । ଏହି ପ୍ରଥାକୁ 'ଉଦୁଲିଆ' କୁହାଯାଏ । ଯୁବତୀର ଇଚ୍ଛା ବିରୁଦ୍ଧରେ ଯୁବକ ତାକୁ ବଳ ପୂର୍ବକ ଟାଣିନେବା ପ୍ରଥାକୁ 'ଘିଚ୍ଚି' ବିବାହ କହନ୍ତି । ଯୁବକର ଇଚ୍ଛା ବିରୁଦ୍ଧରେ ଯଦି ଯୁବତୀ ତା ଘରକୁ ଲୁଗାପଟା ନେଇ ଚାଲିଆସି ରହେ ଓ ଦୀର୍ଘ ଦିନର ଅସ୍ୱୀକୃତ ପରେ ଯୁବକ ଓ ତାର ପିତାମାତା ତାକୁ ଘରେ ରଖିବା ପାଇଁ ସ୍ୱୀକୃତ ଦିଅନ୍ତି ତାକୁ ପଇସାମୁଣ୍ଡି ବା ପରସାମୁଣ୍ଡି କହନ୍ତି । ଏହା ଛଡ଼ା ପୁରୁଷ ଓ ସ୍ତ୍ରୀ ଉଭୟ କ୍ଷେତ୍ରରେ ବିଧବା ବିବାହ ଓ ଛାଡ଼ବି (ସ୍ୱାମୀ ପରିତ୍ୟକ୍ତା) ବିବାହ ହୁଏ । ଏହି ପ୍ରକାର ପରିବାର ଗଠନରେ ଯେହେତୁ ସାମାଜିକ ସ୍ୱୀକୃତ ନଥାଏ, ତେଣୁ ସମାଜର 'ପଞ୍ଚ' ସେମାନଙ୍କ ଠାରୁ କିଛି ଅର୍ଥ ଦଣ୍ଡ ଆଦାୟ କରି ସମାଜରେ ସ୍ୱୀକାର କରିନଅନ୍ତି ।

**ଗ୍ରାମ ସଂଗଠନ :–** ଓଡ଼ିଶାର ଗ୍ରାମୀଣ ସ୍ୱାୟତ୍ତ ଶାସନର ମୂଳ ରୂପର ଉତ୍ସ ସନ୍ଧାନ କଲେ ଆଦିବାସୀ ସଂପ୍ରଦାୟରେ ଏହା ପରିପୂର୍ଣ୍ଣ ରୂପେ ଦେଖିବାକୁ ମିଳେ । ଭୌମକର ଓ ସୂର୍ଯ୍ୟବଂଶ ତଥା ଆଞ୍ଚଳିକ ରାଜବଂଶ ମାନଙ୍କର ଗ୍ରାମ୍ୟ- ପୌର ସଂପର୍କ ଏହି ଗ୍ରାମ ସଂଗଠନକୁ ନେଇ ଶାସନକୁ ନିୟନ୍ତ୍ରିତ କରୁଥିଲା । ଏମାନଙ୍କୁ ମହାସାମନ୍ତ ଚକ୍ର କୁହାଯାଉଥିଲା ବୋଲି ପଣ୍ଡିତ ନୀଳକଣ୍ଠ ମତ ଦେଇଛନ୍ତି । (ଦାସ ନୀଳକଣ୍ଠ : ୧୯ : ୨୨୦)

ପ୍ରତ୍ୟେକ ଆଦିବାସୀ ତଥା ଅଣଆଦିବାସୀ ଗ୍ରାମରେ ଗ୍ରାମୀଣ ମୁଖ୍ୟ ସ୍ୱରୂପ ଜଣେ ଦାୟିତ୍ୱରେ ଥିଲେ । ତାଙ୍କ ସହ ପୂଜକ ସ୍ୱରୂପ ଝାଙ୍କର/ଜାନି/ଦେହୁରୀ ତଥା 'ଗିରି' (Shaman) ସ୍ୱରୂପ ବିହାରୀ/ଉପାରୀ, ଗଉଡ଼, ବଇଦ, ଖବରିଆ; ଗଣା ତଥା ପାଞ୍ଚଜଣ ବୃଦ୍ଧ 'ସିଆନ୍' ଲୋକଙ୍କୁ ନେଇ ଗ୍ରାମ୍ୟ ସଭା 'ପଞ୍ଚ' ଗଠିତ ହେଉଥିଲା । ଆଜିର ପଞ୍ଚାୟତ ବ୍ୟବସ୍ଥାରେ ସରପଞ୍ଚ, ମେମ୍ବରମାନେ ଗ୍ରାମ୍ୟ ଶାସନକୁ ନିୟନ୍ତ୍ରିତ କଲେ ମଧ୍ୟ ସମାନ୍ତରାଳ ଭାବେ ଆଦିବାସୀମାନଙ୍କ ପାରଂପରିକ ଗ୍ରାମ୍ୟସଭା ପଂଚର ପ୍ରଭାବ ଧାର୍ମିକ ସାମାଜିକ କ୍ଷେତ୍ରରେ ବଳବତ୍ତର ରହିଛି । ଗ୍ରାମର ଧନ ଜୀବନର ସୁରକ୍ଷା ସାମୂହିକ ଭାବେ ସମାଧାନ ପାଇଁ ବ୍ୟବସ୍ଥା ଗ୍ରହଣ କ୍ଷେତ୍ରରେ ପଞ୍ଚର ମୁଖ୍ୟ ଭୂମିକା ରହିଛି । ଏହି ଦୃଷ୍ଟିରୁ ପ୍ରତ୍ୟେକ ଆଦିବାସୀ ଗ୍ରାମକୁ ଏକ ବୃହତ୍ତର ପାରିବାରିକ ଏକକ ବୋଲି ଗ୍ରହଣ କରାଯାଇ ପାରେ । ଆଦିବାସୀ ଗ୍ରାମରେ ଏକତ୍ରିତ ଜୀବନ ଯାପନର କେତେକ ଆଦର୍ଶ ଏଠାରେ ଲକ୍ଷଣୀୟ । ଯଥା—

(କ) ନବାନ୍ନ (ନୂଆଖାଇ) କାଳରେ ଯଦି ଗ୍ରାମର କେହି ମୃତ୍ୟୁ ବରଣ କରେ ତେବେ ତାହାର ଦଶାହ କାର୍ଯ୍ୟ ସାରି ଶୁଦ୍ଧ ନହେଲା ପର୍ଯ୍ୟନ୍ତ ସମଗ୍ର ଗ୍ରାମରେ କେହି ନବାନ୍ନ ପାଳନ କରନ୍ତି ନାହିଁ । ଗାଁର ପଞ୍ଚ ମିଶି ପୁଣି ଏକ ଶୁଭଦିନ ନିର୍ଣ୍ଣୟ କରି ସମସ୍ତେ ନବାନ୍ନ ପାଳନ କରନ୍ତି । ସାଧାରଣ ସମୟରେ ବି ଗାଁରେ କେହି ଏକୁଟିଆ ପରିବାର ନବାନ୍ନ ଭକ୍ଷଣ କରିପାରେ ନାହିଁ ।

(ଖ) ଗ୍ରାମର ସମସ୍ତ ପର୍ବପର୍ବାଣି ଗ୍ରାମର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ପାଳିତ ହୁଏ । ସମସ୍ତେ ଏହି ସ୍ଥାନରେ ପୂଜା କରିବା ପାଇଁ ଏକତ୍ରିତ ହୁଅନ୍ତି । ଗ୍ରାମ୍ୟଦେବୀ ସମସ୍ତଙ୍କ ଘରକୁ ଯାଇ ପୂଜା ପାଉଥାନ୍ତି ।

(ଗ) ଚଇତ ପରବ କାଳରେ ପୁରୁଷମାନେ ଦିନ ବେଳେ ଜଙ୍ଗଲକୁ ଯାଇ ଶିକାର କରି ଶିକାର ନେଇ ଗ୍ରାମର ଉତ୍ସବ ସ୍ଥଳକୁ ଫେରନ୍ତି ଓ ସେଇଠି ସ୍ତ୍ରୀ ଲୋକେ ରନ୍ଧାବଢ଼ା କରି ଦେବୀଙ୍କୁ ଖାଦ୍ୟ ଅର୍ପଣ କରି ଗ୍ରାମର ଆବାଳ ବୃଦ୍ଧ ବନିତା ସମସ୍ତେ ଭୋଜନ କରନ୍ତି । ଗ୍ରାମର କେହି ଘରେ ସ୍ୱତନ୍ତ୍ର ରନ୍ଧନ କରନ୍ତି ନାହିଁ ।

(ଘ) ବିବାହ ଉତ୍ସବକୁ ଯୋଗ ଦେବାକୁ ଆସୁଥିବା ବନ୍ଧୁ ବାନ୍ଧବ ଯଥେଷ୍ଟ ପରିମାଣର ଚାଉଳ, ଘିଅ ଓ ଛେଳିମେଣ୍ଢା ଧରି ଆସନ୍ତି । ଏହାକୁ 'ବରନ' କହନ୍ତି । ତେଣୁ ବିବାହକର୍ତ୍ତା ଘରେ ଆର୍ଥିକ ଦିଗରୁ କ୍ଷତିଗ୍ରସ୍ତ ହୁଏନାହିଁ । ପାରସ୍ପରିକ ଆଦାନ ପ୍ରଦାନରେ ବରଂ ଉତ୍ସବଟି ସହଜରେ ସମାହିତ ହୁଏ ।

**ଧର୍ମଧାରଣା ଓ ଦେବଦେବୀ :-** ଆଦିବାସୀ ଧର୍ମଧାରଣାରେ ମଣିଷ ପ୍ରକୃତି ଓ ଅତିପ୍ରାକୃତ ଶକ୍ତି ମଧ୍ୟରେ ନିବିଡ଼ ଯୋଗସୂତ୍ର ରହିଅଛି । ମଣିଷ ନିଜ ବଂଚୁଥିବା ପ୍ରକୃତି ମଧ୍ୟରୁ ହିଁ ସେହି ଅତିପ୍ରାକୃତ ଶକ୍ତିକୁ ଉପଲବ୍ଧି କରେ । ଜଡ ଓ ଜୀବନ ମଧ୍ୟରେ ସେମାନେ ଦେବଦେବୀଙ୍କ ସ୍ୱରୂପକୁ ଉପଲବ୍ଧି କରନ୍ତି । ଆଦିବାସୀମାନେ ପ୍ରକୃତି ସହିତ ଅନୁକୂଳିତ ହେଲାବେଳେ ସଫଳତାର କୃତଜ୍ଞତା ପାଇଁ ତଥା ବିଫଳତାକୁ ଅତିକ୍ରମ କରିବା ପାଇଁ ଅଦୃଶ୍ୟ ଶକ୍ତିର ରୂପ କଳ୍ପନା କରନ୍ତି । ପରିଦୃଶ୍ୟମାନ ପୃଥିବୀର ଲୀଳା ଭୂମିରେ ହିଁ ସେମାନେ ବିଶ୍ୱ ସୃଷ୍ଟିର ପରିକଳ୍ପନା କରନ୍ତି । ଧରଣୀମାତା ଓ ସୂର୍ଯ୍ୟ ଦେବତାଙ୍କୁ ବିଶ୍ୱର ମୂଳ ଦେବଦେବୀ ରୂପେ ବା ପ୍ରକୃତି ପୁରୁଷ ରୂପେ ଗ୍ରହଣକରନ୍ତି । ଏହି ମୂଳ ଦେବଦେବୀଙ୍କ ଠାରୁ ସେମାନଙ୍କ ଆଦିପୁରୁଷ (First Progenitor) ଗଣ ଜନ୍ମ ନେଇଥିବାର ବିଶ୍ୱାସ କରନ୍ତି । ତେଣୁ ଆଦିପୁରୁଷମାନଙ୍କୁ ମଧ୍ୟ ଦେବତାର ପ୍ରତିଷ୍ଠା ଦେଇ ନିଜ ନିଜ ବଂଶକ୍ରମକୁ ସେମାନଙ୍କ ସହିତ ସଂଯୋଜିତ କରିବା ପାଇଁ ସେମାନେ ମିଥ୍‌ର ସାହାଯ୍ୟ ନିଅନ୍ତି ।

ଗ୍ରାମରେ ଦୈବୀ ଦୁର୍ବିପାକରୁ ରକ୍ଷାପାଇଁ, ରୋଗ ବଇରାଗରୁ ମୁକ୍ତି ପାଇଁ, ହିଂସ୍ର ଜନ୍ତୁ ଆକ୍ରମଣରୁ ରକ୍ଷା ପାଇଁ ତଥା ଫସଲ ପ୍ରାଚୁର୍ଯ୍ୟତା ପାଇଁ ଗ୍ରାମ ରକ୍ଷାକାରିଣୀ ଦେବୀ (tutelary deity) ଙ୍କୁ ପୂଜା କରାଯାଏ । ପ୍ରତ୍ୟେକ ଗ୍ରାମରେ ଗ୍ରାମ ରକ୍ଷାକାରିଣୀ ଦେବୀ ରହିଥାନ୍ତି । ଏହି ଦେବଦେବୀଙ୍କ ନିର୍ଦ୍ଦିଷ୍ଟ ଭୂମିକା ରହିଥାଏ । ବର୍ଷର ବିଭିନ୍ନ କାଳରେ ଏହି ଦେବୀଙ୍କଠାରେ ହିଁ ସମସ୍ତ ପୂଜା ଆରାଧନା କରାଯାଇଥାଏ ।

ପ୍ରତୀକ ମଧ୍ୟରେ ଦେବତାର ଆତ୍ମାର ଅବସ୍ଥିତିକୁ ସ୍ୱୀକାର କରୁଥିବା ହେତୁ ଆଦିବାସୀ ସଂପ୍ରଦାୟରେ ଭୂମି ପ୍ରସ୍ତର, ଅସ୍ତ୍ରଶସ୍ତ୍ର, କୌଳିକ ବୃତ୍ତିର ଉପକରଣାଦିରେ ଦେବଦେବୀ ପ୍ରତିଷ୍ଠିତ ହୋଇ ପୂଜିତ ହୋଇଥାନ୍ତି । ବୃକ୍ଷ ମଧ୍ୟରେ ଦେବତାର ଆରୋହଣ କଳ୍ପନାଟି ଭୁଂଇଆ ସଂପ୍ରଦାୟରେ ଅଛି । ତେଣୁ ଭୁଂଇଆ ସଂପ୍ରଦାୟରେ ଶିରା (Shaman) ପ୍ରଥା ନାହିଁ ।

ପୂର୍ବ ପୁରୁଷର 'ଜୀ' ବା ଡୁମା (Spirit) କୁ ଗୋତ୍ର ଦେବତା ରୂପେ ନିଜ ନିଜ ବଂଶର ଆବାହନ କରି ଆଣିବା ଆଦିବାସୀ ସଂପ୍ରଦାୟର ଧର୍ମଧାରଣାର ବିଶେଷତ୍ୱ । ଆଫ୍ରିକାର ଜନଜାତିରେ ବି ଅନୁରୂପ ବିଶ୍ୱାସ ରହିଅଛି । ବ୍ୟକ୍ତିର ମୃତ୍ୟୁ ହେଲା ପରେ ତାର ଆତ୍ମା ମରେନାହିଁ ଓ ଅଦୃଶ୍ୟ ରୂପେ ଠିକ ମଣିଷ ପରି କାର୍ଯ୍ୟ କରିଯାଏ । ଏହି ବିଶ୍ୱାସର ବଶବର୍ତ୍ତୀ ହୋଇ ଆଦିବାସୀ ସଂପ୍ରଦାୟରେ ମୃତ ବ୍ୟକ୍ତିର ଡୁମାକୁ ଆବାହନ କରି ନିଜ ଦେବତା ଘରେ କିମ୍ବା ରୋଷେଇ ଘରେ ଥାପନା କରନ୍ତି । ପିତୃପୂଜା ପରଂପରା ଏହି ସୂତ୍ରରୁ ଆର୍ଯ୍ୟଧାରାକୁ ପ୍ରଭାବିତ କରିଛି ବୋଲି ଆଲୋଚକମାନେ ମତ ଦେଇଥାନ୍ତି । ଆର୍ଯ୍ୟଖଣ୍ଡରେ କିନ୍ତୁ ପିତୃପୁରୁଷଙ୍କୁ ବିସର୍ଜନ ଦିଆଯାଇ ଆତ୍ମାର ମୋକ୍ଷ କାମନା କରାଯାଏ । ଭୂତପ୍ରେତ (evil spirit) ପୂଜା ସମାଜର ନିର୍ଦ୍ଦିଷ୍ଟ କେତେକ ଲୋକ ଯାଦୁବିଦ୍ୟା ଓ ଡାହାଣୀ ବିଦ୍ୟା (magic & witch craft) ମାଧ୍ୟମରେ ଶିଖନ୍ତି । ଏହା ଅନିଷ୍ଟକାରକ । ତେଣୁ ସମାଜରେ ଆଦରଣୀୟ ନୁହେଁ ।

**ପାରିବାରିକ ଜୀବନଚକ୍ରରେ ଧର୍ମାଚାର :–** ପରିବାରରେ ଜନ୍ମ, ବାଳକାର ପ୍ରାକ୍‌ଯୌବନ କାଳୀନ 'କଣାବରା' ଅନୁଷ୍ଠାନ, ବିବାହ ତଥା ବ୍ୟକ୍ତିର ମୃତ୍ୟୁପରବର୍ତ୍ତୀ ଶ୍ରାଦ୍ଧକ୍ରିୟା ବିଭିନ୍ନ ଗୋଷ୍ଠୀରେ ଭିନ୍ନ ଭିନ୍ନ ରୂପେ ପାଳିତ ହୋଇଥାଏ । ଅରଣ୍ୟ ବେଷ୍ଟିତ ସଂଖ୍ୟାଲଘୁ ସମାଜରେ ଏହା ଯେତେ ଶୃଙ୍ଖଳିତ ରୂପେ ପାଳିତ ହୁଏ । ସମତଳ କୃଷିଭିତ୍ତିକ ସମାଜରେ ଏହା ସେତେ ନମନୀୟ । ସାଂସ୍କୃତିକ ଆନ୍ତଃକ୍ରିୟା ଫଳରେ ଏବେ ସମତଳବାସୀ ଗୋଷ୍ଠୀ କ୍ରମଶଃ ଆର୍ଯ୍ୟ ପୂଜା ରୀତି ଦ୍ୱାରା ପ୍ରଭାବିତ ।

**ସାମାଜିକ ଜୀବନଚକ୍ରରେ ଧର୍ମାଚାର :—** କେତେକ ଗୋଷ୍ଠୀ ନିଜ ନିଜ କୁଳାଚାର ବ୍ୟତୀତ କେତେକ ଲୋକାଚାରକୁ ମାନିଥାନ୍ତି । ଗ୍ରାମର କିମ୍ବା ଅଞ୍ଚଳର ସମସ୍ତଙ୍କ ପାଇଁ ଏହା ଅଭିପ୍ରେତ । ଗ୍ରାମର ଧନଜୀବନର ସୁରକ୍ଷା ଓ ଏକତା ପାଇଁ ତଥା ବ୍ୟକ୍ତି ମନର ସାମୂହିକ ଅଭିମୋଦନ ପାଇଁ ସାମାଜିକ ଜୀବନ ଚକ୍ରର ମହତ୍ତ୍ୱ ରହିଅଛି । ସମସ୍ତ ପ୍ରକାର କୃଷିଭିତ୍ତିକ, ପର୍ବପର୍ବାଣି ଓ ଦେବଦେବୀ ପୂଜନଭିତ୍ତିକ ପର୍ବପର୍ବାଣିରେ ଜାତି, ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କର କିଛି ନା କିଛି ପ୍ରକାର୍ଯ୍ୟ ରହିଥିବାର ଦେଖାଯାଏ । ଗ୍ରାମର ଏକ ଦେବୀ ଗୁଡିରେ କେଉଁ ଜାତିର କି ପ୍ରକାର୍ଯ୍ୟ ରହିଛି ତାହା ଏକ ପ୍ରବଚନ ମଧ୍ୟରେ ଲୋକ ପରଂପରାରେ ପ୍ରଚଳିତ । ତା' ହେଲା—

ରଜାର ଯେ ରାଏଜ୍ । ଗଣର ଯେ ଭୁଇଁ ।
ଭୂଁଜିଏକର ଦେବତା । ଡମେକର୍ ସଲ୍‌ତା ।
କନ୍ଧର ଯେ ଧରମ । ଗହୁରର ଯେ ପାଣି ।
କୁମାରର୍ ଯେ ଦିଆ । ଲୋହରାର ଯେ ଖଣା ॥

ଏହାର ଅର୍ଥ ହେଉଛି, କୌଣସି ଦେବୀ 'ଗୁଡ଼ି' (worship hut) ଠାରେ ସମସ୍ତଙ୍କ ପାଇଁ ଦାୟିତ୍ୱ ରହିଅଛି ।

ରାଜାଙ୍କ ଠାରୁ ଖଞ୍ଜା ବୃତ୍ତି ଭୋଗ, ଗଣ୍ଡମାନଙ୍କର ଭୂମି ବା ଜମିଦାନ, ଭୂଂଇଆମାନଙ୍କ ଦ୍ୱାରା ଦେବଦେବୀଙ୍କ ପ୍ରତିଷ୍ଠା ଓ ପୂଜନ, ଉଚ୍ଚ ଜାତି (ତନ୍ତୀ) ମାନଙ୍କ ଠାରୁ ଧୂପ ପାଇଁ ସଳିତା ଦାନ ଓ ବାଦ୍ୟ, କନ୍ଧମାନଙ୍କର ମୂଳ ଦେବୀ ଧରଣୀ ମାତା, ଗଉଡ଼ମାନଙ୍କର ପାଣି ଯୋଗାଣ, କୁମ୍ଭାରମାନଙ୍କ ଦ୍ୱାରା ଧୂପରୁଖା ପ୍ରଭୃତି ଓ ଲୋହାରମାନଙ୍କ ଦ୍ୱାରା ଖଣ୍ଡା ପ୍ରସ୍ତୁତ କରି ଯୋଗାଇବା ପ୍ରକ୍ରିୟା ଗ୍ରାମ ତଥା ରାଜ୍ୟର ସଂହତି ରକ୍ଷା କ୍ଷେତ୍ରରେ ଧାର୍ମିକ ଓ ସାଂସ୍କୃତିକ ଭୂମିକାକୁ ଏଠାରେ ଲକ୍ଷ୍ୟ କରାଯାଇ ପାରେ । ଗ୍ରାମର ଆନ୍ତଃପ୍ରଜାତିକ ସଂପର୍କ ଠାରେ ଜାତି ବର୍ଣ୍ଣର ଭେଦ ଏତେ ଶୃଙ୍ଖଳିତ ଥିଲେ ସୁଦ୍ଧା ଗ୍ରାମ୍ୟଦେବୀଙ୍କ ଠାରେ ସମସ୍ତଙ୍କର ସମାନ ଭୂମିକା ରହିଅଛି । ଏଣୁ ଗ୍ରାମ୍ୟ କୃଷିଭିତ୍ତିକ ସମାଜର ବ୍ରାହ୍ମଣ, କରଣ, କୁଳତା ପ୍ରମୁଖ ଜାତିମାନେ ବି କୃଷିଭିତ୍ତିକ ପର୍ବପର୍ବାଣିରେ ଗ୍ରାମ୍ୟଦେବୀଙ୍କୁ କୁକୁଡ଼ା, ପାରା, ଛେଳି ମେଣ୍ଢାବଳି ଦିଅନ୍ତି ତଥା ଗ୍ରାମ୍ୟ ଝାଙ୍କରଙ୍କ ବିଧିନିଷେଧକୁ ମାନି ଚଳନ୍ତି । ଶେମି ଯାତ୍ରା ନସରିବା ପର୍ଯ୍ୟନ୍ତ କନ୍ଧଗ୍ରାମର ବ୍ରାହ୍ମଣ ବି ଶିମ୍ବଟିଏ ରାନ୍ଧି ଖାଇବା ମନା । କାରଣ ଗାଁର ଜଣେ ବ୍ୟକ୍ତି ସୁଦ୍ଧା ଯଦି ଏହି ନିୟମ ଲଂଘନ କରେ ତେବେ ସାରା ଗାଁର ଲୋକେ ଦେବୀଙ୍କ କୋପ ଦୃଷ୍ଟିର ଶିକାର ହେବେ ।

ଅପର ପକ୍ଷରେ ଗ୍ରାମରେ ବ୍ରାହ୍ମଣ କରଣଙ୍କ ମହାନ ପରଂପରା ଦ୍ୱାରା ଆଦିବାସୀ ସଂପ୍ରଦାୟ କ୍ରମଶଃ ଆର୍ଯ୍ୟ ପୂଜନରୀତି ଧର୍ମଧାରଣା ଓ ଦର୍ଶନ ପୁରାଣାଦି ଦ୍ୱାରା ପ୍ରଭାବିତ ହୋଇଥିବାର ଦୃଷ୍ଟାନ୍ତ ବିରଳ ନୁହେଁ । ପାହାଡ଼ି କନ୍ଧମାନଙ୍କ ପୋଡ଼ ପୂଜା (buffalo sacrifice)କିମ୍ବା ପରଜା ସଂପ୍ରଦାୟର ଟୋକୀପରବ (female infenticides)ର ଅବକ୍ଷୟିତ ଧର୍ମାଚାର କାଳରେ କୁଇ ଭାଷାରେ ଦେବୀ ବନ୍ଦନା ମୂଳକ ସ୍ତୋତ୍ର ଏକାନ୍ତ ଭାବେ ପ୍ରାର୍ଥନା ମୂଳକ ହୋଇଥିଲା ବେଳେ ସମତଳ ଅଞ୍ଚଳର ଦେଶିଆ କନ୍ଧମାନଙ୍କ ପୋଡ଼ପୂଜା କାଳରେ ଦୁର୍ଗା ମହିଷାସୁର ଉପାଖ୍ୟାନ (ଦେବୀ ଭାଗବତ) ତଥା ଲକ୍ଷ୍ମୀନନ୍ଦ ପୁରାଣ (ଜନମ୍ ଖଣ୍ଡ ପୁରାଣ) ଓ ଦ୍ୱି ପ୍ରଜାତିକ ସୃଷ୍ଟି ଓ ସାମାଜିକ ବିକାଶ ସଂପର୍କରେ ମିଶାମିଶି କରି ଗୀତ ହେଉଥାଏ ।

ଏଣୁ ସାମାଜିକ ଓ ଆର୍ଥିକ କ୍ଷେତ୍ରରେ ଜାତି ଜାତି ଭିତରେ ବିଭେଦ ଓ ବାଡର ସୀମା ପ୍ରବଳ ଥିଲେ ସୁଦ୍ଧା ଧାର୍ମିକ ଓ ଆତ୍ମପ୍ରକାଶ ପ୍ରବଣ କଳା କ୍ଷେତ୍ରରେ ଏହି ସୀମା ସଂକୁଚିତ । ବରଂ ସଂହତିର କ୍ଷେତ୍ର କଳା ଓ ଆଦର୍ଶର ପ୍ରୟୋଗ କ୍ଷେତ୍ରରେ ସୁବିସ୍ତୃତ ହୋଇ ସାଂସ୍କୃତିକ ଆନ୍ତଃକ୍ରିୟା ଏଠାରେ ସୁସ୍ପଷ୍ଟ । ଏହି ଭିତ୍ତିଭୂମିରୁ ଆଦିବାସୀ ସାହିତ୍ୟର ଓ ପ୍ରଦର୍ଶନଶୀଳ ଲୋକ କଳା (performing folk arts)ର ଅଧ୍ୟୟନ ଏଠାରେ ସ୍ପୃହଣୀୟ ନିଶ୍ଚୟ ।

— ୨ —

## ଆଦିବାସୀ ସମାଜର ମୌଖିକ ପରଂପରା —

ଆଦିବାସୀ ସମାଜରେ ମୌଖିକ କଳା (verbal art) ପ୍ରକାଶର ଇତିହାସ ନାହିଁ । ଏହା ସମାଜର ଚଳଣି ଭାଷା ଓ ପ୍ରଥା ପରି ଚିରସ୍ଥିତ । ଯୁଗଯୁଗ ଧରି ସାମୂହିକ ପ୍ରକାଶ ଓ ସାମୂହିକ ଉପଭୋଗ ମଧ୍ୟରେ ଏହା ଚିର ଜୀବନ୍ତ । ଆଦି ଅନ୍ତ ନଥିବା ଚିର ପ୍ରବାହମାନ ଚରିତ୍ରକୁ ନେଇ ଆଦିବାସୀ ମୌଖିକ କଳା ଅଭିବ୍ୟକ୍ତ । ସାମାଜିକ ପରିବର୍ତ୍ତନ ସହ ଏହା ଯେପରି ପରିବର୍ତ୍ତିତ ହୁଏ, ଯୁଗ ଯୁଗର ସାମୂହିକ ଅବଚେତନାର ପ୍ରତୀକାତ୍ମକ ଅଭିବ୍ୟକ୍ତିକୁ ମଧ୍ୟ ଏହା ଅପରିବର୍ତ୍ତିତ କରି ରଖିଥାଏ ।

ଆଦିବାସୀ ମୌଖିକ ପରଂପରାରେ ମାନବୀୟ ମୌଳିକ ଗୁଣ ତଥା ହୃଦୟାବେଗର ସ୍ୱତଃସ୍ଫୂର୍ତ୍ତ ପ୍ରକାଶ ହୋଇଥାଏ । ଏଥିରେ କୃତ୍ରିମତା ନଥାଏ । ପ୍ରକୃତିର ସନ୍ତାନ ରୂପେ ନିଜ ପ୍ରତ୍ୟକ୍ଷୀଭୂତ ବସ୍ତୁରାଜିରୁ ଚୌତ୍ତିକ ଓ ସୌଷମିକ ବିକାଶର ଭାବଟି ସେମାନଙ୍କ ମୌଖିକ କଳାରେ ପ୍ରମୂର୍ତ୍ତି ହୋଇ ଉଠିଥାଏ । ଆଦିବାସୀ କବିତା ଇନ୍ଦ୍ରିୟାନୁଭୂତି ସଂଜାତ, ହୃଦୟ ପ୍ରସୂତ । କିନ୍ତୁ ଏଥିରେ ଯେ ମୌଳିକ କବି ବୃତ୍ତିର ପରିସ୍ଫୁଟ ନହୁଏ ତା' ନୁହେଁ । ପ୍ରିୟାର ରୂପ ବର୍ଣ୍ଣନା ପାଇଁ ସେମାନେ ପ୍ରକୃତି ମଧ୍ୟରୁ ଭାବ ଓ ଗୁଣ ତଥା ବସ୍ତୁର ଉପମେୟଟିକୁ ଆଣି ଉପମାନ ସହିତ ତୁଳନା କରିବାରେ ଏହି କବିମାନେ କୁଶଳ । ପ୍ରିୟାର ରୂପ, ଗୁଣ ସ୍ୱଭାବାଦିର ତୁଳନା ପାଇଁ ସେମାନେ ଚନ୍ଦ୍ର କିମ୍ବା ମାଳ କଇଁର ପଦ୍ମ ଓ ଭ୍ରମରର ଆଶ୍ରୟ ନେଇଥାନ୍ତି । ବରଂ ତାଙ୍କ ପରିଚିତ ପ୍ରକୃତିରୁ ଖାଦ୍ୟ ସଂଗ୍ରହ ଓ ଜୀବିକା ନିର୍ବାହ କାଳୀନ ବାସ୍ତବ ବସ୍ତୁରୁ ଉପମେୟ ସଂଗ୍ରହ କରନ୍ତି । ଆର୍ଥିକ ସାମାଜିକ କ୍ଷେତ୍ରରେ ଯେପରି ଏମାନେ ସମଭାଗ୍ୟ ଜୀବନକୁ ଉପଭୋଗ କରିବା କ୍ଷେତ୍ରରେ ବି ଏମାନଙ୍କ ସମଭାଗିତା ରହିଛି ।

ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଜୀବନର ସକଳ କ୍ଷେତ୍ରରେ ଗୀତର ଅପରିହାର୍ଯ୍ୟତା ରହିଛି । ସୁଖ - ଦୁଃଖରେ ନିଜକୁ ପରିପୂର୍ଣ୍ଣ ରୂପେ ପ୍ରକାଶ କରିବା ପାଇଁ ଗୀତର ବ୍ୟବହାର

ଆଦିବାସୀ ସମାଜର ବିଶେଷତ୍ୱ । ବାସ୍ତବପର କଠୋର କର୍ମ ପ୍ରବଣତା ମଧ୍ୟରେ କମ୍ବା ମନର କଳ୍ପ ଲୋକରେ ପ୍ରେମିକା ସହିତ ମିଳିତ ହେବାର ସ୍ୱପ୍ନରେ ଆଦିବାସୀ ଯୁବକ ଯୁବତୀଙ୍କ ହାର୍ଦ୍ଦିକ ଆତ୍ମପ୍ରକାଶ ଏକାନ୍ତ ସହଜ । ଏମାନଙ୍କ ଗୀତ ଗୁଡ଼ିକୁ ନିମ୍ନ ପ୍ରକାରେ ବିଭକ୍ତ କରାଯାଇ ପାରେ । (Mishra . 1989 . 4)

କ- ଆମୋଦ ପ୍ରମୋଦଭିତ୍ତିକ ଗୀତ, ପ୍ରେମ ଗୀତ

ଖ- ଖେଳ ଗୀତ ଓ କର୍ମ ସଂଗୀତ

ଗ- ପାରିବାରିକ ଧର୍ମାଚାରଭିତ୍ତିକ ଗୀତ (ଜନ୍ମ, ବିବାହ, ଶ୍ରାଦ୍ଧ, ଡ଼ୁମା ଆଣିବା)

ଘ- ସାମାଜିକ ଧାର୍ମିକ ଆଚାର ଚଳଣିଭିତ୍ତିକ ଗୀତ, ଠାକୁରାଣୀ ଗୀତ, ଶୀତଳା ମାତା ଗୀତ, ପୋଡବଳି କାଳରେ ଗୋଭି ଉତରା ଗୀତ, ଝୋଙ୍କା ପରବ ଗୀତ, ଚଇତ ପରବ ଗୀତ, ଦୋଲି ଗୀତ ।

ଙ- ପୁରାଣ ଓ ପଚାର ଭିତ୍ତିର ଗୀତ ତଥା ଲୋକ କାବ୍ୟ ।

ଚ- ସଂଗୀତ ଓ ନୃତ୍ୟଭିତ୍ତିକ ଗୀତ ।

ସମତଳ କୃଷି ଭିତ୍ତିକ ସମାଜର ଆଦିବାସୀମାନେ ଆଞ୍ଚଳିକ ଓଡ଼ିଆ ଭାଷାରେ ଲୋକଗୀତ ଗାଇଥାନ୍ତି । କିନ୍ତୁ ସଂଖ୍ୟାଲଘୁ ଗୋଷ୍ଠୀ ମୁଖ୍ୟତଃ ଯେଉଁମାନଙ୍କ ଭାଷା ଆଦିବାସୀମାନେ ପ୍ରଜାତିକ ସଂସ୍କୃତି ଓ ଭାବରାଶିକୁ ଅକ୍ଷୁର୍ଣ୍ଣ ରୂପ ଧରି ରଖିଛନ୍ତି । ଆମୋଦ ପ୍ରମୋଦ ଗୀତ ମଧ୍ୟରୁ କେତେକ ପ୍ରଦତ୍ତ ହେଲା ।

**ପହରିଆ ପ୍ରେମ ଗୀତ :-**

କାଠପାର ପୁରୁବାଘ ପର୍ବତମାଳାର ଜୁରଧିଗମ୍ୟ ପାର୍ବତ୍ୟ ଅଞ୍ଚଳରେ ବସବାସ କରୁଥିବା ପହରିଆମାନଙ୍କର ପ୍ରେମାନୁଭୂତିର ପ୍ରଶ୍ନାତ୍ମକ ବର୍ଣ୍ଣନା ଏହିପରି ।

ଅବିବାହିତ ଯୁବକଟି ପାହାଡ ଉପରେ ଥିବା ଢ଼ାଲୁ ଅଞ୍ଚଳର ଗଛଲଟା ହାଣି ସମତଳ କରି ପୋଡ଼ି ଚାଷୋପଯୋଗୀ କରିଛି ଓ କାଙ୍ଗୁ କସଲ୍ ଶସ୍ୟ ବୁଣିଛି । ସେ ମାମୁଁର ଝିଅକୁ ବିବାହ କରିବା ପାଇଁ ଆଶା କରିଛି ।

ଗୀତ- ଡାହି ଯ ଗଡ଼ଉଁ ଭାବୁନପୁ କସା, ଚନ୍ଦି ବୁନେପୁ କସା,
ମାମା ବ ବେଟି ଲଗୁନ୍ ମୁଲୁକଁ ଅଶା,
ଚେବିନ କୁଲୁକଁ ଅଶା,
ଲେଲେ ସୁନ୍ଦର ଫୁନ କୁଲୁକ ଅଶା ।

ଓଡ଼ିଆ ଭାଷାନ୍ତର - ଡ଼ଙ୍ଗରର ଗଛଲଟା ହାଣି
ଭୂମିକୁ ପୋଡ଼ିଛିରେ ଚନ୍ଦ, ପୋଡ଼ିଛି
ଏବେ ମୁଁ ସେଇଠି କାଙ୍ଗ କସଲ ବୁଣିଛି ।
ମାମୁଁର ଝିଅକୁ ମୁଁ ଆଶା କରୁଛି ।
ଏ ଚନ୍ଦ ! ତୁ କେତେ ସୁନ୍ଦର ଦିଶୁଛୁ
ତୋତେ ମୁଁ ଆଶା କରୁଛି ।

ଲକ୍ଷ୍ୟ କରିବାର କଥା ଯେ, ଆଗରୁ କାହାକୁ ପ୍ରେମ କରିନଥିବା ଯୁବକର ହୃଦୟ ଠାଙ୍ଗରା ଶୁଷ୍କ ପାହାଡ଼ିଆ ଭୂମି । ସେଠାରେ କାଙ୍ଗ କସଲ ବୁଣି ଫସଲ ଫଳାଇବା ପ୍ରକ୍ରିୟା ସହିତ ପ୍ରେମିକ ହୃଦୟରେ ଆଶା କରିବା ପ୍ରକ୍ରିୟା ତୁଳନୀୟ ।

**ପରଜା ସଂପ୍ରଦାୟର ପ୍ରେମ ଗୀତ :—**

ପରଜା ଯୁବକ ଯୁବତୀ ଚଇତ ପରବ ବେଳେ ହୃଦୟର ପ୍ରେମାନୁଭୂତିକୁ ନୃତ୍ୟ ଓ ଗୀତ ମଧ୍ୟରେ ପରିପୂର୍ଣ୍ଣ ଭାବେ ପ୍ରକାଶ କରନ୍ତି । ଦଳେ ଧାଙ୍ଗଡ଼ା ଘୋଷା ଧରି ଗୋଟିଏ ଧାଡ଼ିକୁ ଅନ୍ତରାର ଶେଷ ହେଲାପରେ ବାରମ୍ବାର ଆବୃତ୍ତି କରୁଥାନ୍ତି । ଗୋଟିଏ ଧାଙ୍ଗଡ଼ା ଗୋଟିଏ ପଦର ଅନ୍ତରାଟି ଗାଏ । ତାପରେ ସମବେତ ସ୍ୱରରେ ଘୋଷା ଆବୃତ ହୁଏ । ଯଥା—

ସମବେତ ସ୍ୱର - ଲେଲେ ରସଡ଼େ, ଲେଲେ ରସଡ଼େ
ସାରି କେଲଣାଦୁତା କେଲ ଆସ ଓ ॥ ଘୋଷା ॥
ଜଣେ ଧାଙ୍ଗଡ଼ା - ମାରି ଦେଓ ଦାଙ୍ଗୁଣା ଲେଲେ ରସଡେ ।
ସମସ୍ତେ - ନା ନା ରାଜୋ ଦାଙ୍ଗୁଣା ଆରେ ଆସ ଓ ।୧।
ଜଣେ ଧାଙ୍ଗଡ଼ା - ଇଉନ ଓ ପୁଙ୍ଗନା ଗୁଉ୍ଡ଼ା, ଲେଲେ ରସଡେ
ସମସ୍ତେ - ଇଉନ ଓ ଶୁଙ୍କଲ ଗୁଉ୍ଡ଼ା ଆରେ ଆସ ଓ ।୨।

ପରଜା ଧାଙ୍ଗରା ଯୁବତୀମାନଙ୍କୁ ପ୍ରେମାଳାପ ପାଇଁ ସଙ୍କେତ ଦେଇ ଗାଏ—

ଲେଲେ ରସୋ, ଲେଲେ ରସୋ,
ଗାଛିତଲେ କାନ୍ଦୁଲଗୁରୁ କଲ ଆସ ।୦।
ଆଲ ଏଡ଼େ ଡେଡେଙ୍ଗ ପେ ମାରେଏ ।୧। ଲେଲେ ରସ...
ଆଲ କୁଡ଼ି ଡେଡ଼େଙ୍ଗ ସେ ମାରେଏ ।୨। ଲେଲେ ରସ...

ପ୍ରେମିକା ତଦ୍ରୂପ ପ୍ରେମିକକୁ ଫୁଲ ଗୁନ୍ଥି ଦେବା ପାଇଁ ଡ଼ାକେ ଗାଏ-

ଆଲେ ଦାଙ୍ଗୁଣାରୁ ପୁଲ ଗୁଣ୍ଡି ଦିଅର୍ ।୦।
ଆତେ ସାନ ସୁରି, ମଣ୍ଡେ ରୁବିନ ପିତାଉ
ଆଲେ ଦାଙ୍ଗୁଣାରି ପୁଲ ଗୁଣ୍ଡି ଦିଅର୍ ।୧।

ଏହିପରି ପ୍ରତ୍ୟେକ ସଂପ୍ରଦାୟର ପ୍ରେମ ଗୀତରେ ରୂପକାତ୍ମକ ଭାବେ କିମ୍ବା ପ୍ରତ୍ୟକ୍ଷ ରୂପେ ହୃଦୟ ବୃତ୍ତିର ବିମଳ ପରିପ୍ରକାଶ ହୋଇ ତାହା ମୌଖିକ ପରଂପରା ରୂପେ ବଂଶ ରହିଥାଏ ।

ଧର୍ମାଗୃହରେ ବ୍ୟବହୃତ ଗୀତ ଗୁଡ଼ିକୁ ପବିତ୍ର ବୋଲି ଯେହେତୁ ସ୍ୱୀକାର କରାଯାଏ ଏଗୁଡ଼ିକୁ କେବଳ ପର୍ବପର୍ବାଣି ଓ ଦେବଦେବୀ ବନ୍ଦନା କାଳ ଛଡ଼ା ଅନ୍ୟ କାଳରେ ଆଦୌ ଗାୟନ ହୁଏନାହିଁ । ଆଦିବାସୀ ସୃଷ୍ଟି ମିଥ୍ ତଥା ବଂଶର ଇତିହାସ ମୌଖିକ ପରଂପରା ରୂପେ ଧର୍ମାଗୃହରେ ଆବୃତ୍ତି ହୁଏ । ନୃତ୍ୟଭିତ୍ତିକ ଗୀତ ଗୁଡ଼ିକ ଧାର୍ମିକ ଓ ଧର୍ମନିରପେକ୍ଷ ତଥା ସାମାଜିକ ଚରିତ୍ରର ସମ୍ବାହକ । ପ୍ରଜାତିକ ମିଥ୍ ସହ ଭାରତୀୟ ମହାନ୍ ପରଂପରାର ପୁରାଣାଂଶ ଗୁଡ଼ିକ ବିଭିନ୍ନ ସ୍ଥାନରେ ଗ୍ରଥିତ ହୋଇଥାଏ ।

ଆଦିବାସୀ ଓ ଅଣଆଦିବାସୀ ସମାଜର ବିଭିନ୍ନ ଜାତି ପ୍ରଜାତି ମଧ୍ୟରେ ପାରିବାରିକ ସାମାଜିକ ଚଳଣି କ୍ଷେତ୍ରରେ କୁଳାଗ୍ରହ କିମ୍ବା ଲୋକାଗ୍ରହ ମାନିବା ପାଇଁ କଠୋର ଶୃଙ୍ଖଳା ରହି ଥାଇପାରେ । କିନ୍ତୁ ହୃଦୟର ଆତ୍ମପ୍ରକାଶ ପାଇଁ ନୃତ୍ୟଗୀତ ଓ ନାଟ୍ୟ କଳା ପ୍ରଦର୍ଶନ, ସଂଦର୍ଶନ ଓ ସଂଗ୍ରହଣ କ୍ଷେତ୍ରରେ ଜାତିଧର୍ମ ବର୍ଣ୍ଣଭେଦ ଓ ବିଚ୍ଛିନ୍ନତାର ଅବକାଶ ନାହିଁ । ସମ୍ଭବତ ସେହି ହେତୁ ଭାରତୀୟ ବାଙ୍ମୟ କଳାରେ ଚୌତ୍ତିକ ପାରସ୍ପରିକତା ଓ ସଂସ୍କୃତିକ ନିରବଚ୍ଛିନ୍ନତା ପରିଦୃଷ୍ଟ ହୁଏ । ସମାଜ ବିଜ୍ଞାନୀ ସିଂଗରଙ୍କ ମତରେ —

Perhaps the most Striking aspect of the Community in culture between village and the city is the common stock of mythological and legendry themes shaied by both villagers and city men. (Singer : 1972 : 7 -75)

ଏହିହେତୁ ପୁରଜନଙ୍କ ସୃଷ୍ଟି ପୁରାଣ ଲୋକ ସ୍ତରରେ ସମାଦୃତ ଓ ଅନୁକରଣୀୟ ହୁଏ ତଥା ଲୋକ କଳାର ସୌନ୍ଦର୍ଯ୍ୟ ବିଦଗ୍ଧ ସ୍ତରରେ ସମାଦୃତ ହୁଏ । ଆଦିବାସୀ କଳା ଅଭିବ୍ୟକ୍ତି କ୍ଷେତ୍ରରେ ମୌଖିକ କଳା ସ୍ୱରୂପ ଗୀତ, କାବ୍ୟ, କାହାଣୀ, ସୃଷ୍ଟି ମିଥ୍ ଲୌକିକ କିମ୍ବଦନ୍ତୀ, ମୌଖିକ ଇତିହାସ, ପ୍ରବାଦ ପ୍ରବଚନ ଗୁଡ଼ିକୁ ଗ୍ରହଣ କରାଯାଇପାରେ । ଲୋକଗୀତ ଗୁଡ଼ିକ ବ୍ୟକ୍ତିକ ଭାବାବେଗର ପରିପ୍ରକାଶ । କିନ୍ତୁ ପ୍ରଜାତିକ କାବ୍ୟ, କାହାଣୀ, ମିଥ୍, କିମ୍ବଦନ୍ତୀ, ପ୍ରବାଦ ପ୍ରବଚନ ଆଦି ଆଦିବାସୀ ଓ ସହାବ-ସ୍ଥାୟୀ ସଂସ୍କୃତିର କଳାତ୍ମକ ପ୍ରକାଶ । ସାମୂହିକ ମାନସିକତାର ଚିତ୍ର ଫୁଟି ଉଠିଥାଏ ।

**ପ୍ରଜାତିକ କାବ୍ୟ — (Ethnic Epic)**

ପ୍ରତ୍ୟେକ ଆଦିବାସୀ ଗୋଷ୍ଠୀର ମୌଖିକ ଇତିହାସ ରହିଅଛି । ପ୍ରତ୍ୟେକ ଗୋଷ୍ଠୀର ସୃଷ୍ଟି ସ୍ଥାୟୀ ବସବାସ ତଥା କ୍ଷମତାଶାଳୀ ହୋଇ ମାନବ ସମାଜରେ ପ୍ରତିଷ୍ଠିତ ହେବା ଓ ରାଜପଣ କରିବା ବିଷୟ ଗୁଡ଼ିକ ମୌଖିକ ପରଂପରା ରୂପେ ବହୁ-ଦିନରୁ ପ୍ରଚଳିତ । ପ୍ରଥା ସର୍ବସ୍ୱ ଆଦିବାସୀ ଗୋଷ୍ଠୀମାନଙ୍କରେ ନିଜ ନିଜ ଇତିହାସ, ସଂସ୍କୃତି ନାୟକ (Culture Hero) ତଥା ବଂଶର ସ୍ମରଣୀୟ ଘଟଣାବଳୀକୁ ନେଇ କାବ୍ୟଚକ୍ର (epic cycle) ଶୁଣିବାକୁ ମିଳେ ।

ପ୍ରଜାତିକ କାବ୍ୟ ବା ଲୋକକାବ୍ୟ (folk epic) ଚରିତ୍ର ଦୃଷ୍ଟିରୁ ସ୍ୱ ସ୍ୱ ପ୍ରଜାତିକ ସଂସ୍କୃତିର ପ୍ରତିନିଧିତ୍ୱ କରେ । ଗୋଟିଏ ଜାତି ନିଜର ଦଳୀୟ ପରିଚିତ (group identify) ତଥା ସ୍ୱଜାତି କୈନ୍ଦ୍ରିକତା (ethro centricism)କୁ ବଜାୟ ରଖିବା ପାଇଁ ଏହି କାବ୍ୟ ଗୁଡ଼ିକ କଳ୍ପିତ । ନିଜ ନିଜ ଜାତିର ଆଦିପୁରୁଷ ସହିତ ଅଲୌକିକ ଗୌରବ ଗାରିମା, ଯୁଦ୍ଧ, ରାଜ୍ୟଜୟ, ଭୂମିଅଧିକାର, ରାଜକନ୍ୟାକୁ ବିବାହ ତଥା ଅସାଧ୍ୟ ସାଧନ କରିବା ପ୍ରଭୃତି କ୍ରିୟା କାବ୍ୟର ସଂସ୍କୃତି ନାୟକଙ୍କ ଦ୍ୱାରା ସାଧିତ ନାନା ଅଲୌକିକ କଥା-ଗୁମ୍ଫିତ ହୋଇଥାଏ ।

ମଧ୍ୟଭାରତରେ ତଥା ଓଡ଼ିଶାର ସମସ୍ତ ଆଦିବାସୀ ସଂପ୍ରଦାୟରେ ଏହି ପରଂପରା ଏବେ ସୁଦ୍ଧା ଐତିହ୍ୟର ବିଷୟ ହୋଇନାହିଁ । ପହରିଆ ଗୋଷ୍ଠୀର ଗାନ୍ଧୁ ପାରଧିଆ, କୋକୋ ଭିଏନା, ସିରାରାମ ରାଉତ, ଢୋଡ଼ୋକ ଗୀତ, ଭୁଂଜିଆମାନଙ୍କର ରିଖମୁନ୍, ତୁଳସୀ ବୀର, ଖୋଲ୍ ଗଡ଼ିଆ ବୀର, ଗଣ୍ଡମାନଙ୍କର ଉପଜାତି 'ପରଧନିଆ' (bard) ଭାଟମାନଙ୍କର ଦ୍ୱାରା ଆବୃତ୍ତ ସିଂହଲ ସାଏ ଛତ୍ରୀ, ଚତଲସିଂ ଛତ୍ରୀ, ଯଦୁମଣି ଛତ୍ରୀ ବୀରଗାଥା କନ୍ଧମାନଙ୍କର ନାଙ୍ଗମଝି ରାଜ ଫୁଲିଆ ତଥା 'ଭୀମା ସିଡ଼' (ଭିଶୀ : ୧୯୮) ବନଜାରା ସଂପ୍ରଦାୟର ଲଦନ ଲଦା, ଲଖା ବନଜାରା ଓ ମିଠୁ ଭୂଖିଆ ତଥା ଅନ୍ୟ ସଂପ୍ରଦାୟମାନଙ୍କର ପ୍ରଜାତିକ କାବ୍ୟରେ ସଂପୃକ୍ତ ଜାତିର ମୌଖିକ ଇତିହାସର ବର୍ଣ୍ଣନା ସଙ୍ଗେ ସଙ୍ଗେ କାବ୍ୟଧର୍ମୀତା ଓ ରୋମାନ୍‌ସର ମଧୁର ଚିତ୍ର ପ୍ରଦର୍ଶିତ ହୋଇଅଛି ।

ପ୍ରତ୍ୟେକ ମୌଖିକ କାବ୍ୟର କଥାଚକ୍ର (story cycle) ରହିଅଛି । ନାୟକ - ନାୟିକାଙ୍କ ନାମ ଅନୁସାରେ ଗୋଟିଏ ଗୋଟିଏ କଥାଚକ୍ର ନିର୍ମିତ। ରାମାୟଣ ସାତକାଣ୍ଡ କିମ୍ବା ଭାଗବତ ଦ୍ୱାଦଶସ୍କନ୍ଦ ପରି ପ୍ରଜାତିକ କାବ୍ୟ ଗୁଡ଼ିକ କେତେ ସଂଖ୍ୟକ 'ଖେନା' (ସ୍କନ୍ଦ>ଖନ୍ଦ>ଖେନ୍ଦା>ଖେନା) ବା ଶାଖାରେ ବିଭକ୍ତ ହୋଇଥାଏ । ପ୍ରତ୍ୟେକ 'ଖେନା' ଏକ ଏକ ନାୟକ ନାୟିକାଙ୍କ ଜୀବନଚକ୍ରକୁ ପ୍ରତିନିଧିତ୍ୱ କରିଥାଏ । ଲୌକିକ ଅଲୌକିକ ଘଟଣା ମିଶ୍ରିତ ଏହି 'ଖେନା' ବାସ୍ତବ କଳ୍ପନାର ମିଶ୍ରରାଗରେ ରଂଜିତ । ସଂସ୍କୃତ କାବ୍ୟ ପରଂପରା ପରି ଏହା କାବ୍ୟାରମ୍ଭରୁ ଦେବଦେବୀ ବନ୍ଦନା ବିଷୟ ବର୍ଣ୍ଣନା, ନାୟକର ଜନ୍ମ, ନାୟକ ବଡ ହୋଇ ଅସାଧ ସାଧନ କରିବା, ପ୍ରେମ ଓ ଯୁଦ୍ଧରେ ବିଜୟୀ ହୋଇ ରାଜ୍ୟପାଳିବା କାବ୍ୟର ମୂଳକଥା । ଆଦିବାସୀ ସଂସ୍କୃତିର ନାୟକ ପ୍ରକରଣ (Hero pattern) ଏହି ପ୍ରଜାତିକ କାବ୍ୟ ଗୁଡ଼ିକରୁ ଉପଲବ୍ଧ । Mishra : 1990 : 164)

କେତେକ ଆଦିବାସୀ ଗୋଷ୍ଠୀ ରାମାୟଣ ମହାଭାରତରେ କଥାବସ୍ତୁର ଆହରଣ କରି ନିଜ ପ୍ରଜାତିକ କାବ୍ୟରେ ଲୌକିକୀ-କରଣ (Parochialisation) କରି ନେଇଛନ୍ତି । ମହା-ଭାରତୀୟ ପୁରାଣ ଚରିତ୍ର ଗୁଡ଼ିକ ଆଦିବାସୀ ଚରିତ୍ର ରୂପେ ବର୍ଣ୍ଣିତ ହୋଇଛନ୍ତି । ଛତିଶଗଡର ବୈଗା ସଂପ୍ରଦାୟର 'ଲକ୍ଷ୍ମଣ ଯତି' ତଥା କନ୍ଧମାନଙ୍କର ଝାମା ସିଡ଼ିରେ, ଗଣ୍ଡମାନଙ୍କ ସୃଷ୍ଟି ମିଥ୍‌ରେ ଯଥାକ୍ରମେ ରାମ, ଲକ୍ଷ୍ମଣ, ସୀତା ମଧ୍ୟମ ପାଣ୍ଡବ ଭୀମ ଓ ଶିବ-ପାର୍ବତୀ ପ୍ରମୁଖ ସର୍ବଭାରତୀୟ ରୂପେ ଲୀଳା କରିଛନ୍ତି । (Elwin : 1935 : 22-28, Naik : 1972 : 139 and Mishra : 1988)

**ଆଦିବାସୀ କାହାଣୀ :—**

ଆଦିବାସୀ କାହାଣୀ ଗୁଡ଼ିକ ମୁଖ୍ୟତଃ ପ୍ରାକୃତିକ ପରିବେଶ ସହିତ ମାନବୀୟ ମାନସିକତାର ବିଚିତ୍ର ସମବାୟରେ ସଂରଚିତ । କାହାଣୀରେ ମଣିଷ, ପଶୁପକ୍ଷୀ, ବୃକ୍ଷଲତା, ଫଳ, ପାହାଡ଼, ଝରଣା, ଅସୁର ଆଦି ସମସ୍ତ ଚରିତ୍ର ସଜୀବ । ମଣିଷ ମୃତ୍ୟୁପରେ ବୃକ୍ଷ ହେବା ଓ ସେହି ବୃକ୍ଷରୁ ପୁଣି ମଣିଷରେ ରୂପାନ୍ତରିତ ହେବା, ନିଷିଦ୍ଧ ଫଳଖାଇ ଦୁର୍ଦ୍ଦଶାଗ୍ରସ୍ତ ହେବା, ପଶୁପକ୍ଷୀ ମଣିଷ ପରି କଥା କହିବା, ସର୍ପଲଂପଟ ହୋଇ ନାରୀ ସଂଭୋଗ କରିବା, ମାଙ୍କଡ, ଠେକୁଆ, ବିଲୁଆ ପରି ଦୁର୍ବଳ ପ୍ରାଣୀମାନେ ହାତୀ, ବାଘ, ସିଂହକୁ କୌଶଳରେ ପରାଜିତ କରିବା, ଗୁଧ୍ରପକ୍ଷୀ କିମ୍ବା ପଶୁଦ୍ୱାରା ମଣିଷ ଶିଶୁ ପାଳିତ ହେବା, ବଣ ମଇଁଷି ଦ୍ୱାରା ଗାଈଆଳ ପିଲା ଅସାଧ ସାଧନ କରିବା ପ୍ରଭୃତି ଅସଂଖ୍ୟ କାହାଣୀ ଆଦିବାସୀ ମାନସିକତାର ସାଂକେତିକ ଅଭିବ୍ୟକ୍ତି ରୂପେ ଶ୍ରୁତିଗୋଚର ହୁଏ ।

ଭାରତର ବିଶିଷ୍ଟ ନୃତତ୍ତ୍ୱବିତ୍ ବୋଷ କହନ୍ତି 'ଭାରତୀୟ ଜୀବନରେ ବସ୍ତୁଗତ ଦିଗରୁ ଅଧିକ ବିଭିନ୍ନତା ପ୍ରକାଶ ପାଉଥିଲେ ହେଁ ଅନ୍ୟାନ୍ୟ ଉଚ୍ଚ ଦିଗମାନଙ୍କରେ ଏହି ବିଭିନ୍ନତା କ୍ରମଶଃ ସଂକୀର୍ଣ୍ଣ ହୋଇଆସେ । (ବେହୁରା : ୧୯୮୨ . ୨୦) ଅପର ପକ୍ଷରେ ସିଙ୍ଗରଙ୍କ ମନ୍ତବ୍ୟରୁ ଜଣାଯାଏ ଯେ ଭାରତୀୟ ପୁରାଣ ଉଭୟ ଲୋକ ଓ ବିଦଗ୍ଧ ସ୍ତରରେ ସମଭାବରେ ସଂଚରିତ ଓ ସଂଭୁକ୍ତ । ଏହି ପରିପେକ୍ଷୀରେ, ନୃତାତ୍ତ୍ୱିକମାନଙ୍କର ଉପରୋକ୍ତ ସିଦ୍ଧାନ୍ତକୁ ଭିତ୍ତି କରି ଆଦିବାସୀ କାହାଣୀ ମଧ୍ୟରେ ବୈଦିକ ଓ ଜାତକ କାହାଣୀର ମୋଟିଫ୍ (motif) ସମାନତା ତଥା ସାଂସ୍କୃତିକ କ୍ଷେତ୍ରରେ ସମାଜର ପରସ୍ପର ସଂପର୍କ ବିହୀନ ସ୍ତରରେ ଭାରତୀୟ ଚେତନାଟି କପରି ସଂଚରିତ ତାହା ନିମ୍ନୋକ୍ତ କାହାଣୀ ଗୁଡ଼ିକର ତୁଳନାତ୍ମକ ଅଧ୍ୟୟନରୁ ପ୍ରମାଣ କରାଯାଇ ପାରେ ।

**କ- ବୈଦିକ କାହାଣୀ :—** ବିଶ୍ୱାମିତ୍ର ଶ୍ୱାପଚ ସଂବାଦ (ବ୍ୟାସ, ମହାଭାରତ, ଶାନ୍ତିପର୍ବ) ସହିତ ବୋଣ୍ଡନର ଗଣ୍ଡ ସଂପ୍ରଦାୟରୁ ସଂଗୃହୀତ ବୃଷୀବୁଢ଼ୀ କପରି ସ୍ୱର୍ଗରୁ ଜଳ ଆଣିଲା ଶୀର୍ଷକ କାହାଣୀର ସମଧର୍ମିତା ତଥା ବହୁ ପୁରାକାଳରୁ ଲୋକ ପୌର ନିର୍ବିଶେଷରେ ଏହାର ବିସରଣ ସଂପର୍କରେ ଅନୁଧ୍ୟାନ କରାଯାଇପାରେ ।

**ବୈଦିକ କାହାଣୀ—** ବିଶ୍ୱାମିତ୍ର ଚଣ୍ଡାଳ ସଂବାଦ

ମେନକାଙ୍କୁ ତ୍ୟାଗ କରି ବିଶ୍ୱାମିତ୍ର ବହୁବର୍ଷ ତପସ୍ୟା ମଗ୍ନ ରହିଲେ । ପୃଥିବୀର ଦୀର୍ଘକାଳ ଧରି କରାଳ ଦୁର୍ଭିକ୍ଷ ହେଲା । ଅନ୍ନ ବିନା ସମସ୍ତେ ମରିବାକୁ ଲାଗିଲେ । ବିଶ୍ୱାମିତ୍ର କ୍ଷୁଧାର୍ତ୍ତହୋଇ ଏକ ଚଣ୍ଡାଳ ଘରେ ଅନ୍ନ ପାଇଁ ପହଞ୍ଚିଲେ । ଦେଖିଲେ ସେ ଶ୍ୱାନ ମାଂସ ରନ୍ଧନ କରୁଛନ୍ତି । ବିଶ୍ୱାମିତ୍ର ସେହି ଚଣ୍ଡାଳଠାରୁ ଶ୍ୱାନ ମାଂସ ଗ୍ରହଣ କରିବାକୁ ମନସ୍ଥ କଲେ । କିନ୍ତୁ ଦେବତାଙ୍କୁ ଅର୍ପଣ ନକରି ନିଜେ ବା ଖାଇବେ କପରି ? ଏଣୁ ସେ ଦେବରାଜ ଇନ୍ଦ୍ରଙ୍କୁ ଶ୍ୱାନ ମାଂସ ଅର୍ପଣ କଲା ବେଳେ ଇନ୍ଦ୍ର ତାଙ୍କୁ ସେହି କାର୍ଯ୍ୟରୁ ନିବୃତ୍ତ ହେବାକୁ କହିଲେ ଓ ପୃଥିବୀରେ ପ୍ରବଳ ବର୍ଷା କଲେ । ଫସଲ ହେଲା । ଦୁର୍ଭିକ୍ଷର ପ୍ରତିକାର ହେଲା ।

(ତ୍ରିପାଠୀ : ୧୯୮୧ : ୯୫)

**ଆଦିବାସୀ କାହାଣୀ –** "ଋଷୀ ବୁଢ଼ା କପରି ସ୍ୱର୍ଗରୁ ଜଳ ଆଣିଲା" (ସଂଗ୍ରହ ସ୍ଥାନ ବୋଡ଼େନ ଗ୍ରାମର ଗଣ୍ଡବୁଢ଼ା)

ଥରେ ବାର ବର୍ଷ ଧରି ବର୍ଷା ହେଲେ ନାହିଁ । ଦୁର୍ଭିକ୍ଷ ହେଲା । ଜଣେ ଋଷୀବୁଢ଼ା ନିଜ ପୁଅମାନଙ୍କୁ ନଈ ବାଲିରେ ହଳ କରିବା କାମ ଶିଖାଇଲା । ଇନ୍ଦ୍ର ସ୍ୱର୍ଗରୁ ଏକ ବୁଢ଼ାବ୍ରାହ୍ମଣର ଛଦ୍ମ ବେଶରେ ଆସି ନଈବାଲିରେ ଚାଷ କରୁଥିବା ଋଷୀବୁଢ଼ାକୁ ପଚାରିଲେ, ନଈବାଲିରେ ଚାଷ ହୁଏ କି ? ଋଷୀବୁଢ଼ା କହିଲା, ମୋ ପରି ମୋ ପୁଅମାନେ ହଳ ଧରିବା, ଚାଷ କରିବା ବୃତ୍ତି ନଜାଣିଥିଲେ ଘର ସଂସାର କପରି ଚାଲିବ । ଯାହାର କର୍ତ୍ତବ୍ୟ ସିଏ ନକଲେ ଜଗତ କପରି ଚାଲିବ । ସୂର୍ଯ୍ୟ ଚନ୍ଦ୍ର ବି ତ ନିଜ କର୍ତ୍ତବ୍ୟ କରୁଛନ୍ତି । ବାସ୍, ଇନ୍ଦ୍ର ସେତିକି କଥାରେ ଚିନ୍ତାମଗ୍ନ ହୋଇପଡ଼ିଲେ । ସେ ବା କେତେ ଦିନ ଇନ୍ଦ୍ର ରହିପାରିବେ । ତାଙ୍କ ପୁତ୍ର (ଗୁଡ଼ମେଘ) ମାନଙ୍କୁ ଆଉ ଅଳସୁଆ ହୋଇ ବସି ରହିବାକୁ ନଦେଇ ତୁରନ୍ତ କାର୍ଯ୍ୟରେ ଲଗାଇଲେ । ଗୁଡ଼ମେଘ ନିଜ ନିଜ କର୍ତ୍ତବ୍ୟ କଲାବେଳକୁ ମର୍ତ୍ତ୍ୟରେ ପ୍ରବଳ ବର୍ଷା ହେଲା । ଦୁର୍ଭିକ୍ଷର ପ୍ରତିକାର ହେଲା ।

ଦେବରାଜ ଇନ୍ଦ୍ର ଏତେବେଳେ ଯାଇ ବୁଝି ପାରିଲେ ଯେ ମର୍ତ୍ତ୍ୟର ସେହି ଋଷୀବୁଢ଼ାଟି ତାଙ୍କଠାରୁ କପରି କୌଶଳରେ ଜଳ ନେଇଯାଇଛି । ତାଙ୍କ ଅଲକ୍ଷ୍ୟରେ ଦୁର୍ଭିକ୍ଷର ପ୍ରତିକାର ହୋଇଯାଇଛି ।

ସଂପୃକ୍ତ ଦୁଇଟି କାହାଣୀର ମୁଖ୍ୟ ଉଦ୍ଦେଶ୍ୟ (motif) ଦୁର୍ଭିକ୍ଷର ପ୍ରତିକାର ପାଇଁ ଇନ୍ଦ୍ରଙ୍କ ଠାରୁ ଜଳ ଆଣିବା । ବିଶ୍ୱାମିତ୍ର ପ୍ରତ୍ୟକ୍ଷ ଭାବେ ଇନ୍ଦ୍ରଙ୍କୁ ଶ୍ୱାନ ମାଂସ ଅର୍ପଣ କରି ତାଙ୍କୁ ବର୍ଷା କରିବା ପାଇଁ ନିରୁପାୟ କରିଥିଲା ବେଳେ, ଆଦିବାସୀ କାହାଣୀର ଋଷୀବୁଢ଼ାଟି ପରୋକ୍ଷ ଭାବେ କୌଶଳ ଦ୍ୱାରା ଇନ୍ଦ୍ରଙ୍କୁ କର୍ତ୍ତବ୍ୟ ସଚେତନ କରାଇଛି । ଲକ୍ଷ୍ୟଣୀୟ ଯେ ବୈଦିକ ଇନ୍ଦ୍ରଙ୍କ ଠାରୁ ଜଳ ଆଣିବାରେ ବିଶ୍ୱାମିତ୍ରଙ୍କ କ୍ଷମତା ଓ ସ୍ପର୍ଦ୍ଧା ରହିଛି ଅଥଚ ସାଧାରଣ ଋଷୀବୁଢ଼ାଟି ନିଜର କୌଶଳ ଓ ଶାଳୀନତା ବଳରେ ସେହି କାର୍ଯ୍ୟଟି ସଂପାଦନ କରିଅଛି । ଔଚିତ୍ୟ ଦୃଷ୍ଟିରୁ ଆଦିବାସୀ କାହାଣୀଟି ଗ୍ରହଣ ଯୋଗ୍ୟ । ଯାହା ହେଉ, ଉଭୟ କାହାଣୀର ସଂରଚନା ଭୂମିଟି ଯେ ଏକ ଏହା ଯେ କେହି ସ୍ୱୀକାର କରିବେ ।

**ମଦ୍ୟର ଆବିଷ୍କାର —** ମଦର ଆବିଷ୍କାର କପରି ହେଲା, ଉଦ୍ଦେଶ୍ୟର ସମଧର୍ମିତା ଥାଇ ଜାତକ କାହାଣୀ 'କୁମ୍ଭ ଜାତକ' ତଥା ମଧ୍ୟ ଭାରତୀୟ ଦ୍ରାବିଡ଼ ଓ ମୁଣ୍ଡାରୀ ଗୋଷ୍ଠୀମାନଙ୍କର 'ମଦ୍ୟର ଆବିଷ୍କାର' କାହାଣୀର ତୁଳନା କଲେ, ସମାଜର ଉଭୟ ସ୍ତରରେ ତଥା କାଳର ନିରବଚ୍ଛିନ୍ନତା କ୍ଷେତ୍ରରେ ଏହା କପରି ସଂରଚିତ ତାହା ପ୍ରତ୍ୟକ୍ଷ କରାଯାଇପାରେ ।

**କୁମ୍ଭ ଜାତକ—** ବୁଦ୍ଧଦେବ ଜେତବନରେ ବିଶାଖାଙ୍କ ମଦ୍ୟପାନ କରିଥିବା ପଞ୍ଚଶହ ସଖୀଙ୍କ ଉନ୍ମତ୍ତ ଅବସ୍ଥା ଦେଖି ଯାହା କହିଥିଲେ ତାହା ଏହିପରି —

ବାରଣାସୀରେ ବ୍ରହ୍ମଦତ୍ତ ରାଜାଙ୍କ କାଳରେ କାଶୀ ନଗର 'ସୁର' ନାମକ ବଣୁଆ ଜଙ୍ଗଲ ଜିନିଷ ସଂଗ୍ରହ ପାଇଁ ହିମାଳୟ ଅରଣ୍ୟରେ ପ୍ରବେଶ କରି ଦେଖିଲା ଗୋଟିଏ ଗଛରେ ଏକ କୋରଡ଼ ଅଛି । ହରିଡ଼ା, ଅଁଳା, ଗୋଲମରିଚ ଫଳମାନ ସେହି ଗଛ କୋରଡରେ ପଡେ । ତା ଉପରେ ବର୍ଷା ପାଣି ଜମି ରହିଥାଏ । ନିକଟସ୍ଥ ଶାଳଧାନ ବଣରୁ ଶୁଆମାନେ ଧାନଖାଇ ଆସି ସେହି ଗଛ କୋରଡର ପାଣିପିଇ ଗଛତଳେ ଘୂମାଇ ଶୋଇ ପଡ଼ି ପୁଣି କେତେବେଳେ ଉଠି ରବ କରି ପୁଣି ଉଡ଼ିଯାନ୍ତି । ପଶୁମାନେ ମଧ୍ୟ ସମଦଶାପନ୍ନ ହୁଅନ୍ତି । 'ସୁର' ଏହାଦେଖି ନିଜେବି କୋରଡ ପାଣି ପିଇ ମାତାଲ ହେଲା ଓ ମାଂସ ଖାଇ ନାଚିଲା । ସେଠି 'ବରୁଣ' ନାମକ ଜଣେ ତପସ୍ୱୀଙ୍କୁ 'ସୁର' ଏହା ପିଇବାକୁ ଦେଲା । ଜଙ୍ଗଲରୁ ପ୍ରଥମ ଥର ପାଇଁ ଏହା ସୁର ଓ ବରୁଣଙ୍କ ଦ୍ୱାରା ଆବିଷ୍କୃତ ହୋଇଥିବାରୁ ମଦ୍ୟର ନାମ 'ସୁରା' ଓ 'ବାରୁଣୀ' । ( ଶତପଥୀ . ୧୯୮୯ )

ମଧ୍ୟଭାରତୀୟ ଗଣ୍ଡ, ବଣ୍ଡା, କନ୍ଧ, ବୈଗା, ଭୁଂଜିଆ ତଥା ଭୀମା ଉପଜାତିମାନଙ୍କର ବିଶ୍ୱାସ ଯେ 'ଭୀମା'ଙ୍କ ଦ୍ୱାରା ମଦ୍ୟର ଆବିଷ୍କାର ହେଲା । କାହାଣୀଟି ଏହିପରି—

ଥରେ ଗୋଟିଏ ଗଣ୍ଡ ସମାଜର ବିବାହ ଉତ୍ସବ ଚାଲିଥାଏ । ନାଚ-ଗୀତ, ଭୋଜି-ଭାତ ଚାଲିଥାଏ । ଧାଙ୍ଗରା ଧାଙ୍ଗରୀ ନାଚୁଥାନ୍ତି କିନ୍ତୁ ନାଚରେ 'ରସ' ବରଷୁ ନଥାଏ । ସମସ୍ତେ କହିଲେ ନାଚଗୀତ ଠିକ ହେଉଛି କିନ୍ତୁ ମନ ନାଚଉଠୁନାହିଁ । ହୃଦୟ ରସରେ ପୁରି ଉଠୁନାହିଁ । ତେଣୁ ସମସ୍ତେ 'ଭୀମା' (ଗୋଣ୍ଡ ଉପଜାତି, ଏକ କଳାକାର ଗୋଷ୍ଠୀ ଯେଉଁମାନେ ନାଚ-ଗୀତ କରି ଆଦିବାସୀ ସଂପ୍ରଦାୟରେ ପେଟ ପୋଷନ୍ତି )କୁ କହିଲେ ରସ ଖୋଜି ଆଣିବା ପାଇଁ । ସେ ସେଠୁ ରସର ସନ୍ଧାନରେ ବାହାରିଲା । ଦେଖିଲା ଗୋଟିଏ ମହୁଲ ଗଛ କୋରଡରେ ଭିତରେ, କିଛି ପକ୍ଷୀମାନେ ପଶି ଯାଉଛନ୍ତି ।

ସେଠୁ ବାହାରି ଛଟପଟ ହୋଇ ନାଚ ନାଚ ସ୍ଥିର ହୋଇ ଶୋଇ ଯାଉଛନ୍ତି ତଥା ସେଠୁ ଉଠି ଉଡ଼ି ଯାଉଛନ୍ତି । ଭୀମା ସେଠିକି ଯାଇ ଦେଖିଲା କୋରଡ଼ ଭିତରେ ମହୁଲରସ ଜବ୍‌ଜବ ଯାଉଛି । ଭୀମା ଦୁଇଟିର ଆଞ୍ଜୁଳା ଜଳ ସେହି କୋରଡ଼ରୁ ଆଣି ପିଇଲା । ଏକ ଅନାସ୍ୱାଦିତ ଉତ୍ତେଜନାରେ ତା ଦେହ ମନ ଭରିଗଲା । ସେ ପାଗଳ ପରି ସେଠାରେ ନାଚିଗଲା । ଭାବିଲା ଏଇଟା ହିଁ ରସ । ଯାହାକୁ ପିଇ ନାଚିଲେ ଗାଇଲେ ସମସ୍ତେ ରସ ପାଇବେ । ଏହା ଭାବି ବଡ଼ ପତର ଠୋଲାରେ ସେହି ରସକୁ ନେଇ ସେ ବିବାହ ଉତ୍ସବରେ ପରିବେଷଣ କଲା । ସ୍ତ୍ରୀ ପୁରୁଷ ସମସ୍ତେ ପିଇଲେ । ନାଚଗୀତ ପ୍ରେମାଳାପରେ ରସ ବରଷିଗଲା । ଲୋକେ ଏହା ପିଇ ବାଅରା (ପାଗଳ) ପରି ହେବାରୁ ଏହାର ଆବିଷ୍କର୍ତ୍ତା ଭୀମାକୁ ସେମାନେ 'ବାଅରା ଭୀମା' ରୂପେ ନାମିତ କଲେ । ସେହି ଦିନରୁ ମହୁଲ ଫୁଲରୁ ଲୋକେ ମଦ୍ୟ ତିଆରି କରିବା ଶିଖିଲେ ।

ବିଣ୍ଡା ସଂପ୍ରଦାୟରେ ବି ବିଶ୍ୱାସ ରହିଛି ଯେ ଭୀମା ହେଉଛନ୍ତି ମଦ୍ୟର ଆବିଷ୍କର୍ତ୍ତା । ତାଙ୍କ ଝାଳରୁ ମହୁଲ ଗଛର ସୃଷ୍ଟି ହେଲା, ତେଣୁ ମଦକୁ ଭୀମା ଦେବତାର ଝାଳ ବୋଲି ବିଣ୍ଡାମାନେ ବିଶ୍ୱାସ କରନ୍ତି । (Elwin : 1950 : 142)

ବୈଦିକ କାହାଣୀ ଓ ଜାତକ କାହାଣୀ ଯୁଗଯୁଗରୁ ଭାରତ ଭୂମିରେ ପ୍ରଚଳିତ । ଏହାର ଆଞ୍ଚଳିକ ସ୍ୱରୂପଟିମାନ ଆଦିବାସୀ ଲୋକ ପରଂପରାରେ ଏବେ ସୁଦ୍ଧା ରହିଅଛି ତଥା ଭବିଷ୍ୟତରେ ବି ରହିଥିବ ଏଥିରେ ସନ୍ଦେହ ନାହିଁ । ପ୍ରାକୃତିକ ପରିବେଶ ଭେଦରେ କେବଳ ବସ୍ତୁ ଓ ଚରିତ୍ରର ନାମ ପରିବର୍ତ୍ତନ ହୋଇଅଛି କିନ୍ତୁ ମୂଳ ଉଦ୍ଦେଶ୍ୟ ତଥା କାହାଣୀର ସଂରଚନାଟି ଯେ ଏକ ଏହା ଅବଶ୍ୟ ସ୍ୱୀକାର୍ଯ୍ୟ । ଭାରତୀୟ ଲୋକ କାହାଣୀର କାଳାନୁକ୍ରମିତା (diochrony) ଓ ଧାରାବାହିକତା (continuity) ଲୋକ ମାନସିକତାର ଉଭୟ ସ୍ତରରେ କିପରି ଏକ ଓ ଅଭିନ୍ନ ତାହା ଏହି କାହାଣୀମାନଙ୍କରୁ ଉପଲବ୍ଧ ।

**କିମ୍ବଦନ୍ତୀ :–** ଆଦିବାସୀ ପରଂପରାରେ ସ୍ଥାନୀୟ କିମ୍ବଦନ୍ତୀ ଓ ପରିଭ୍ରମଣଶୀଳ କିମ୍ବଦନ୍ତୀ ଶୁଣିବାକୁ ମିଳେ । ନିଜ ପରିଧିମଧ୍ୟରେ ଘଟୁଥିବା ଘଟଣା, ସ୍ଥାନ ଓ ବ୍ୟକ୍ତିତ୍ୱ ସଂପର୍କରେ ଆଦିବାସୀ ସଚେତନ । ବିଶେଷତଃ ନଦୀ, ଜଳାଶୟ, ପ୍ରସବଣ, ପ୍ରପାତ, ଜଙ୍ଗଲ, ଗୁମ୍ଫା, ପ୍ରସ୍ତର ଚଟାଣ ଖୋଦିତ ମନୁଷ୍ୟର ପଦଚିହ୍ନ, ଦୂର ଅତୀତର ଭଗ୍ନ ଐତିହାସିକ ଅବଶେଷ, ଅସ୍ତ୍ରଶସ୍ତ୍ର, ଦୁର୍ଗ, ପ୍ରତ୍ନାବଶେଷ ଉପରେ ନିଜ ବିଶ୍ୱାସ ଓ ବିଶ୍ୱ ଦୃଷ୍ଟିର ସମୀକରଣ କରାଇ ଆଦିବାସୀ ମାନସିକତା ଏଗୁଡ଼ିକୁ ଆତ୍ମସ୍ଥ କରିଥାଏ । ମଧ୍ୟଭାରତୀୟ ସମସ୍ତ ଜଳ ଉତ୍ସ 'ଭୀମ'ଙ୍କ ଅଦ୍ଭୁତ କାର୍ଯ୍ୟରୁ ସୃଷ୍ଟି ବୋଲି ଆଦିବାସୀ ବିଶ୍ୱାସ ରହିଛି । ଏହା ଛଡ଼ା ନିକଟ ଅତୀତରେ ଘଟିଥିବା ରାଜା କିମ୍ବା ବିଭିନ୍ନ ଅଲୌକିକ ତପସ୍ୱୀଙ୍କ ଘଟଣା ଗୁଡ଼ିକ କିମ୍ବଦନ୍ତୀ ରୂପେ ସ୍ଥାନୀୟ ଭିତ୍ତିରେ ଶୁଣିବାକୁ ମିଳେ ।

**ଆଦିବାସୀ ମିଥ୍ :–** ଆଦିବାସୀ ସଂପ୍ରଦାୟରେ ଅତୀତର ଇତିହାସକୁ କେବଳ ମୌଖିକ ପରଂପରା ସୂତ୍ରରେ ତଥା ଧର୍ମାଗୃହର କେତେକ ପ୍ରତୀକ ମଧ୍ୟରେ ସ୍ମରଣୀୟ କରି ରଖିବାକୁ ପ୍ରଯତ୍ନ କରାଯାଇ ଥାଏ । ଏଥିପାଇଁ ପ୍ରତ୍ୟେକ ଗୋଷ୍ଠୀର ଧର୍ମୀୟ ମୁଖ୍ୟ ବିଶେଷଜ୍ଞ ରୂପେ ରହିଥାନ୍ତି । ପ୍ରତ୍ୟେକ ଗୋଷ୍ଠୀର ନିଜ ଜାତିର ସୃଷ୍ଟି ଓ ପୃଥିବୀରେ ବଂଶବୃଦ୍ଧି ଓ ବସତି ସଂପର୍କରେ ସୃଷ୍ଟି ମିଥ୍ ରହିଅଛି । କଳାହାଣ୍ଡି ସମେତ ମଧ୍ୟଭାରତୀୟ ସଂପ୍ରଦାୟର ସୃଷ୍ଟି ମିଥ୍‌ର କେତେକ ପ୍ରମୁଖ motif ହେଉଛି–

୧– ପ୍ରଳୟ ଜଳ ।

୨– ଲାଉ/ଝାପି ପ୍ରଳୟ ଜଳରେ ଭାସିବା ।

୩– ଝାପି/ଲାଉ ମଧ୍ୟରେ ଭାଇ ଭଉଣୀ ରହିଥିବା ଓ ପ୍ରଳୟ ଜଳରୁ ଉଦ୍ଧାର କରିବା ।

୪– ମାଟି ଆଣିବା ।

୫– ମାଟି ଦ୍ୱାରା ପ୍ରଳୟ ଜଳରେ ପୃଥିବୀ ସୃଷ୍ଟି ।

୬– ଭାଇ ଭଉଣୀଙ୍କ ମିଳନରେ ମାନବ ଜାତିର ସୃଷ୍ଟି ।

( Blackburn : 1977 : 192 )

ଗଣ୍ଡ, କନ୍ଧ, ଭୁଂଜିଆ, ପହରିଆ ପ୍ରମୁଖ ଆଦିବାସୀ ଗୋଷ୍ଠୀ ମାନଙ୍କରେ ମାନବ ସୃଷ୍ଟି ବିଷୟକ ମିଥ୍‌ଟି ଏହିପରି—

ପ୍ରଥମେ ଡୋକା ଓ ଡୋକୀ ଥିଲେ । ଦିନେ ଡୋକା ଜଙ୍ଗଲକୁ ଶିକାର କରିବାକୁ ଯାଇଥିଲା । ସେ ଏକ ହରିଣକୁ ଶର ଯୋଖିଲା ବେଳେ ହରିଣ ମଣିଷ ପରି କହିଲା- ମିତେ ! ମତେ ମାର ନାହିଁ । ଆଜକୁ ସାତ ଦିନ ପରେ ପୃଥିବୀରେ ସାତ ଦିନ ସାତରାତି ପ୍ରବଳ ବର୍ଷା ହୋଇ ପ୍ରଳୟ ହେବ । ମଣିଷ ସମାଜ ଧ୍ୱଂସ ପାଇଯିବ । ନିଜେ ବଂଚିବାକୁ ଉପାୟ କର । ଡୋକା ପଚାରିଲା- କେମିତି ବଂଚିବି ? ହରିଣ କହିଲା- ନିଜ ପୁଅ ଝିଅଙ୍କୁ ଏକ ଲାଉରେ ଭରି ୧୨ ବର୍ଷର ଖାଦ୍ୟ ତହିଁରେ ସଂଚୟ କରି ପ୍ରଳୟ ଜଳରେ ଛାଡ଼ିଦେବ । ସେମାନେ ମଣିଷ ସମାଜର ନୂତନ ସୃଷ୍ଟି କରିବେ ।

**ତୁଳନୀୟ :—** କୃତମାଳା ନଦୀରେ ଜଳ ତର୍ପଣ କରୁଥିଲା ବେଳେ ସତ୍ୟବ୍ରତ ନାମକ ରାଜାଙ୍କ ହସ୍ତରେ ଏକ କ୍ଷୁଦ୍ର ମତ୍ସ୍ୟ ଆସି ପଡ଼ିଲା ଓ କହିଲା, ମୋତେ ବଂଚାଅ । ବଡ ମାଛମାନେ ମୋତେ ଖାଇଯିବେ । ରାଜା ତାକୁ କମଣ୍ଡଳୁ-କଳଶ-କୂପ-ଖାତ-ସରୋବର ସିନ୍ଧୁରେ ରଖିଲେ । ରାଜା ବିସ୍ମିତ ହେବାରୁ ବିଷ୍ଣୁ ନିଜେ ମତ୍ସ୍ୟ ରୂପରେ ଅବତାର ହୋଇ କହିଲେ ସପ୍ତ ଦିନରେ ପ୍ରଳୟ ହେବ । ତୁମ ପାଖକୁ ନୌକା ଆସିବ । ନୌକାକୁ ମୋ ଶୃଙ୍ଗରେ ବାନ୍ଧି ପ୍ରଳୟ ପାରି ହେବ । ସେହି ମତ୍ସ୍ୟ ପରେ ବ୍ରହ୍ମାଙ୍କ ବେଦ ହରଣକାରୀ ଲୟଗ୍ରୀବ ଦାନବକୁ ମାରି ବେଦ ଆଣି ବ୍ରହ୍ମାଙ୍କୁ ଦେଲେ । ରାଜା ସତ୍ୟବ୍ରତ ଶ୍ରାଦ୍ଧଦେବ ମନୁ ରୂପ ପ୍ରଥମେ ପରିଚିତ ହେଲେ ଓ ପରେ ବୈବସୁତ ମନୁ ରୂପରେ ପ୍ରସିଦ୍ଧି ଲାଭ କଲେ । (ଶ୍ରୀମଦ୍ ଭାଗବତ : ଅଷ୍ଟମ ସ୍କନ୍ଧ ୨୪ ଅଧ୍ୟାୟ, ଗୀତା ପ୍ରେସ୍, ଗୋରଖପୁର)

ସେହି କଥା କହୁଥିବା ହରିଣଠାରୁ ଏହା ଶୁଣି ଡୋକା ଘରକୁ ଫେରି ଗୃହପାଳିତ ପଶୁପକ୍ଷୀଙ୍କୁ ମାରି ଖାଇବାକୁ ଲାଗିଲା । ଡୋକି! ପଚାରିଲା କାହିଁକି ସମସ୍ତଙ୍କୁ ମାରି ଖାଇଯାଉଛ ? ଡୋକା କହିଲା, ପ୍ରଳୟ ହେବ । ସେଠୁ ପ୍ରକୃତରେ ପ୍ରଳୟ ଆସିଲା । ଡୋକା ଡୋକୀ ନିଜ ପୁଅ ଝିଅଙ୍କୁ ବଂଚାଇବା ପାଇଁ ଲାଉରେ ପୂରାଇ ତହିଁରେ ବାରବର୍ଷର ଖାଦ୍ୟ ରଖି ପ୍ରଳୟ ଜଳରେ ଭସାଇ ଦେଲେ ଓ ସେମାନେ ନିଜେ ସଲିଳ ସମାଧି ଭଜିଲେ । ପୃଥିବୀ ଧ୍ୱଂସ ପାଇଗଲା ।

ଭଗବାନ ସେଠୁ ପ୍ରଳୟ ଜଳରେ ସୃଷ୍ଟି ରଚନା କରିବାକୁ ଚାହିଁଲେ । ନିଜ ଦେହ ମଳରୁ ଏକ କାଉ ସୃଷ୍ଟି କରି ପୃଥିବୀରେ ମଣିଷର ସତ୍ତାଅଛି କି ନାହିଁ ଜାଣିବା ପାଇଁ କାଉକୁ ପଠାଇଲେ । କାଉ ଖୋଜି ଖୋଜି ଲାଉ ମଧ୍ୟରେ ଦୁଇଟି ମଣିଷ ଛୁଆ ଦେଖିଲା ଓ ଭଗବାନଙ୍କୁ ଆଣିଦେଲା । ଭଗବାନ ସେମାନଙ୍କ ସାହାଯ୍ୟରେ ମାନବ ସମାଜ ସୃଷ୍ଟି କରିବାକୁ ଚାହିଁଲେ । କାଉକୁ ମାଟି ଖୋଜି ଆଣିବାକୁ କହିଲେ । କାଉ କେଁଚୁଆ ପାଖରୁ ମାଟି ଆଣିଲା । ମାଟି ଆଣିବାରେ କଙ୍କଡ଼ା ଓ କଇଁଚ ତାକୁ ସାହାଯ୍ୟ କଲେ । କାଉ ମାଟିଆଣି ଭଗବାନଙ୍କୁ ଦେଲା । ପଦ୍ମପତ୍ରରେ ମାଟିକୁ ସାତ ଭାଗକରି ଫିଙ୍ଗି ଦେବାରୁ ସପ୍ତଦ୍ୱୀପର ସୃଷ୍ଟି ହେଲା । ତାପରେ ସରୀସୃପ, ପଶୁପକ୍ଷୀ, ଗଛ ପର୍ବତ, ଓ ନଦୀର ସୃଷ୍ଟି ହେଲା । ଏବେ ଭଗବାନ ଲାଉ ଭିତରେ ଥିବା ଡୋକା ଡୋକୀଙ୍କ ପୁଅଝିଅଙ୍କୁ ଆଣି ପରିଚୟ ପଚାରିଲେ । ସେମାନେ ଭାଇଭଉଣୀ କହିବାରୁ ପୁଣି ୧୨ ବର୍ଷ ଦୁହିଁଙ୍କୁ ଅଲଗା ରଖି ସେମାନଙ୍କୁ ବସନ୍ତରୋଗ ଦ୍ୱାରା ବିକୃତ ଚେହେରା କଲେ । ଫଳରେ ପରସ୍ପରକୁ ଚିହ୍ନି ନପାରି ଦୁହେଁ ଭଗବାନଙ୍କ ଦ୍ୱାରା ସ୍ୱାମୀ ସ୍ତ୍ରୀ ରୂପେ ପରିଚିତ ହେଲେ । ସେମାନଙ୍କ ମିଳନରୁ ମାନବ ଜାତିର ସୃଷ୍ଟି ହେଲା । ପରେ ବିଭିନ୍ନ ଗୋଷ୍ଠୀ ଓ ଜାତିରୂପେ ସେମାନେ ପରିଚିତ ହେଲେ ।

କହିବା ବାହୁଲ୍ୟ, ବୈଦିକ ପରଂପରାର ଏହି ପ୍ରଳୟ ଚେତନା ପର୍ବତ ଅରଣ୍ୟବାସୀ ଜାତିମାନଙ୍କ ସୃଷ୍ଟି ମିଥ୍‌ରେ ଲକ୍ଷଣୀୟ । ସାମାଜିକ ଶ୍ରେଣୀ ବିଭାଗରେ ଆର୍ଯ୍ୟ ଆଦିବାସୀ କିମ୍ବା ପୌର-ଆଦିମ ସଂପର୍କ ଏତେ ନିକଟବର୍ତ୍ତୀ ନୁହେଁ । କିନ୍ତୁ ମିଥ୍ ସଂରଚନାରେ ଏକା ଚେତନା ଓ ଏକ ଦର୍ଶନ କିପରି ଉଭୟ ସମାଜକୁ ପ୍ରଭାବିତ କରିଛି ତାହା ଭାରତୀୟ ସଂସ୍କୃତିର ସଂହତି ସଂସ୍ଥାପକ ଉପାଦାନ ଛଡ଼ା ଅନ୍ୟ କିଛି ନୁହେଁ ।

ବୈଦିକ ସଂସ୍କୃତିରେ ଯେପରି ସମଗ୍ର ବିଶ୍ୱକୁ ଏକ ପରିବାର ରୂପେ ଗ୍ରହଣ କରାଯାଇଛି । ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡର ଉପଲବ୍‌ଧି ରହିଛି । ଆଦିବାସୀ ଧର୍ମଧାରଣା ଓ ମିଥ୍‌ରେ ସମଗ୍ର ପୃଥିବୀକୁ ନିଜ ପରିଦୃଶ୍ୟମାନ ପୃଥିବୀର ଅଞ୍ଚଳ ସହିତ ସମୀକରଣ କରାଯାଇଛି । ଭାରତର ପ୍ରତ୍ୟେକ ଲଘୁ ସଂପ୍ରଦାୟ ନିଜ ସୀମିତ ପୃଥିବୀ ମଧ୍ୟରେ ମହାନ୍ ପରଂପରାର ଉପଲବ୍‌ଧି କରିବା ପ୍ରକ୍ରିୟା ଭାରତୀୟ ସଂସ୍କୃତିର ମୌଳିକ ରୂପେ ବୈଶିଷ୍ଟ୍ୟ ।

ସୃଷ୍ଟି ମିଥ୍‌ର ଉପାଙ୍ଗ ରୂପେ ନାନା ଫଳ, ପୁଷ୍ପ, ପଶୁପକ୍ଷୀ, ସରୀସୃପ ଗ୍ରହ ନକ୍ଷତ୍ର ତାରା ପ୍ରଭୃତି ପ୍ରକୃତିର ରହସ୍ୟମୟ ବିଭାବ ଲୌକିକ ଭିତ୍ତିରେ ଗୁମ୍ଫିତ । ଗୁଣ୍ଡୁଚି ମୂଷାର ପିଠିରେ ତିନୋଟି ରେଖା କାହିଁକି ହେଲା, ଡିମିରି ଫଳରେ ପୋକ କାହିଁକି ଥାଏ ? ଆକାଶ କାହିଁକି ଏତେ ଉଚ୍ଚରେ, ଧାନର ସୃଷ୍ଟି କିମିତି ହେଲା, କଦଳୀ ଗଛ କାହିଁକି ଥରେ ଫଳ ଦିଏ, ଧରଣୀ ମାତା କାହିଁକି ନରବଳୀ ମାଗେ ଏହିପରି ନାନା ଲୌକିକ କଳ୍ପନା ପ୍ରକୃତି ସହିତ ସଂସ୍କୃତିର ସଂଯୋଗ ସୂତ୍ରରୁ ଉଦ୍ଭୂତ । ଏହା ଚିର ରହସ୍ୟମୟ ରୂପେ ଲୋକ ସ୍ତରରେ ଅସମାଧିତ । ଏକ ସୀମିତ ସ୍ଥାନରେ ରହିଥିଲେ ସୁଦ୍ଧା ପ୍ରତ୍ୟେକ ପରିଦୃଶ୍ୟମାନ ବସ୍ତୁରାଜି ସହିତ ନିଜ ସାମାଜିକ ଓ ପ୍ରାକୃତିକ ମାନସିକତାର ଏକ ବିଚିତ୍ର କାଳ୍ପନିକ କାହାଣୀ ସମୂହର ସୃଷ୍ଟି କରି ଆଦିବାସୀ ସମାଜ ସନ୍ତୁଷ୍ଟ ହୁଏ । ଏବର ବିଶାରଦମାନେ ଏହାକୁ ଅର୍ଦ୍ଧ ବୈଜ୍ଞାନିକ ସତ୍ୟ ରୂପେ (Psendo Scientific truth) ଗ୍ରହଣ କରନ୍ତି । ଡାରଉଇନୀୟ ବିବର୍ତ୍ତନବାଦର ବହୁ ଭାରତୀୟ ପୁରାଣର ଦଶାବତାର କଳ୍ପନା ଏହି ରହସ୍ୟର ମୂଳ ସ୍ରୋତ ।

**ଆଦିପୁରୁଷ ମିଥ୍ :—** ଆଦିବାସୀ ସୃଷ୍ଟି ମିଥ୍‌ର ପରବର୍ତ୍ତୀ ପର୍ଯ୍ୟାୟ ଆଦିପୁରୁଷ ମିଥ୍ । ପ୍ରତ୍ୟେକ ଗୋଷ୍ଠୀ ନିଜର ଆଦି-ପୁରୁଷ / ବାଣକର୍ତ୍ତା / ସୃଷ୍ଟିକର୍ତ୍ତାର ଅଲୌକିକ ନାୟକୋଚିତ ଘଟଣା ବହୁଳ ଜୀବନ ସମ୍ବଳିତ କାହାଣୀ ଗୁଡ଼ିକୁ ପବିତ୍ର ବୋଲି ମୌଖିକ ପରଂପରା ରୂପେ ଧର୍ମୀୟ ଉତ୍ସବ ଅନୁଷ୍ଠାନ - ବିଶେଷତଃ ପୂର୍ବପୁରୁଷ ଡୁମା ଆବାହନ - କାଳରେ ଆବୃତ୍ତି କରିଥାନ୍ତି । ଏହି ଆଦିପୁରୁଷ କିପରି ସଂପୃକ୍ତଜାତିକୁ ପରିଚିତ ହେଲେ, କେଉଁ ବଂଶର ସହିତ ତାଙ୍କର ବିବାହ ହେଲା, କେଉଁ ସ୍ଥାନରେ ବସତି ସ୍ଥାପନ କଲେ, ଗାଁ ବସାଇଲେ, ଦେବୀ ଦେବତାଙ୍କୁ କେଉଁଠୁ ଆଣିଲେ ବୃତ୍ତି ଓ ଜୀବିକା କ୍ଷେତ୍ରରେ କିପରି ଦୃଷ୍ଟାନ୍ତ ପ୍ରତିଷ୍ଠାକଲେ ନିଜ ଜାତି କମ୍ବା ବଂଶକୁ ଅନ୍ୟ ମଣିଷ ଗୋଷ୍ଠୀଠାରୁ କିପରି ଉଚ୍ଚମନ୍ୟତାର ପ୍ରତିଷ୍ଠା ଦେଲେ । ସେ ସବୁର ବିଶଦ୍ ବର୍ଣ୍ଣନା ଏହି ମିଥ୍‌ରେ ଶୁଣିବାକୁ ମିଳେ । ଏପରିକ ଗୋଷ୍ଠୀମାନଙ୍କର ମୂଳ ସୂତ୍ର ଏଥି ମଧ୍ୟରେ ଗ୍ରଥିତ । ଏକ ଏକ ମୁଖ୍ୟ ଜାତିର ଉପଜାତିମାନେ ବି ନିଜର ମୂଳ ଆଦିପୁରୁଷ ରୂପେ ସେମାନଙ୍କୁ ମାନିଥାନ୍ତି ।

ଏହି ମିଥ୍‌ରେ ଶିକାର ଓ ଖାଦ୍ୟ ସଂଗ୍ରହ ଠାରୁ ଆରମ୍ଭ ହୋଇ କୃଷିଭିତ୍ତିକ ଜୀବନର ଆରମ୍ଭ, ଗ୍ରାମୀଣ କାରିଗରୀର ଆବିଷ୍କାର ଓ ବୃତ୍ତିଭିତ୍ତିରେ ଜାତି ବିଭାଜନ, ଗୋତ୍ର ଭିତରେ ଭୂଭାଗ ବଣ୍ଟନ ଓ ଦେବଦେବୀଙ୍କ ପୂଜନ, ଜାତି ପ୍ରଜାତି ମଧ୍ୟରେ ଉଚ୍ଚନୀଚ ପ୍ରତିଷ୍ଠିତ ନିର୍ଦ୍ଧାରଣ ନାନା ସାମାଜିକ ବିଧି ନିଷେଧର ପ୍ରଚଳନ ଏହି ମିଥ୍ ମଧ୍ୟରେ ସଂରଚିତ ଓ ବର୍ଣ୍ଣିତ । ପ୍ରତ୍ୟେକ ଗୋଷ୍ଠୀ କିପରି କଶ୍ୟପ, ବଶିଷ୍ଠ, ଗାର୍ଗ ଋଷିଙ୍କ ଠାରୁ ଉଦ୍‌ଭବ ତାହାର ସୂତ୍ର ମଧ୍ୟ ଏହି ମିଥ୍‌ରେ ପ୍ରଲମ୍ବିତ । ଦେବଦେବୀଙ୍କ ସୃଷ୍ଟି ମିଥ୍‌ର ସ୍ୱରୂପରେ ମଧ୍ୟ ବିଚିତ୍ରତା ରହିଅଛି । ମୂଳ ଦେବଦେବୀଙ୍କ ବ୍ୟତୀତ ସମସ୍ତ ଲୌକିକ ଦେବଦେବୀ ଏକ ବିଶେଷ ପରିସ୍ଥିତି କମ୍ବା ଘଟଣାରୁ ଉଦ୍ଭୂତ । କଳାହାଣ୍ଡିର ପେଣ୍ଡରା ଗଡ଼ଏନ୍ ଦେବୀ ଚଲିକାର କାଳଜାଇ ପରି ଆଦିବାସୀ ଦେବା-ଦେବୀମାନଙ୍କର ସୃଷ୍ଟି ପଛରେ ଏକ ଏକ କାହାଣୀ ବିଦ୍ୟମାନ । ମଣିଷର ମୃତ୍ୟୁପରେ ଯାବଜୀବନ ଦେବତା/ ଦେବୀ ରୂପେ ପ୍ରତିଷ୍ଠିତ ପାଇବା ପ୍ରକ୍ରିୟାରୁ ପେଣ୍ଡରା ଗଡ଼ଏନ୍ ଦେବୀଙ୍କ ସୃଷ୍ଟି ଓ ପୂଜନ କ୍ରିୟାକୁ ଏଠାରେ ଉଲ୍ଲେଖ କରାଯାଇ ପାରେ ।

( Mishra : 1990 : 10-11 )

**ମିଥ ରେ ଆଦିବାସୀର ଦର୍ଶନ :—** ତ୍ୟାଗ ହିଁ ହେଉଛି ଭାରତୀୟ ସଂସ୍କୃତିର ମୂଳ ଆଦର୍ଶ । ବୈଦିକ କାଳରୁ ଏହି ଦର୍ଶନ ବୁଦ୍ଧ, ଗାନ୍ଧୀଙ୍କୁ ଅଭିପ୍ରେରିତ କରିଛି । ପୁରାଣ ଓ ଇତିହାସରେ ଏହାର ପଟାନ୍ତର ନାହିଁ । କନ୍ଧ ସଂପ୍ରଦାୟର ସମୃଦ୍ଧି ପାଇଁ ବ୍ୟକ୍ତିର ଆତ୍ମ ବଳିଦାନ ମେରିଆ ସ୍ତୋତ୍ରରେ ନିହିତ । ଏହା ବୈଦିକ ଦର୍ଶନର ପ୍ରତିଫଳନ ମାତ୍ର । ରାଜ୍ୟର ମଙ୍ଗଳ ଓ ଦେଶ ଉଜ୍ଜଳ କରିବା ପାଇଁ ଦେବଦେବୀଙ୍କୁ ଆଦିବାସୀ ସ୍ତୋତ୍ରରେ ନାନା ପ୍ରକାର ବନ୍ଦନା କରାଯାଇଛି । ଗୋଟିଏ ପରଜା ସ୍ତୋତ୍ରରେ ଉଲ୍ଲେଖ ଅଛି ଯେ—

ଧରଣୀ ମାତା ! ଜନାଖାଲ (ବନ୍ଦ ଗର୍ତ୍ତ) ମଧ୍ୟରେ ଛିଆ-ଯାଇଥିବା ବଳ ଯେପରି ପ୍ରସ୍ତର ଢ଼ାଙ୍କୁଣି ଦ୍ୱାରା ଘୋଡ଼େଇ ସୁରକ୍ଷିତ ରଖାଯାଇଥାଏ । ଠିକ୍ ସେହିପରି ଏହି ବିଶାଳ ପୃଥିବୀ ରୂପୀ ଜନାଖାଲରେ ଆମେ ସବୁ ମଣିଷ ତୋର ଉର୍ଚ୍ଚିଷ୍ଟ । ଆମ୍ଭ-ମାନଙ୍କୁ ଅକାଶ ରୂପୀ ପଥର ଘୋଡଣୀରେ ତାଙ୍କି ସୁରକ୍ଷିତ କରିରଖ । ଆମ ଦେହରେ କଣ୍ଟା ମୁଣ୍ଡକୁ ଝୁଣ୍ଟା ନଲାଗୁ ।

**ରାଜ୍ୟପ୍ରାପ୍ତି ମିଥ୍ –** ମଧ୍ୟଯୁଗରେ ଓଡ଼ିଶା ତଥା ମଧ୍ୟଭାରତରେ ଯେଉଁ ସଂଖ୍ୟା ଗରିଷ୍ଠ ଆଦିବାସୀ ସମାଜ ଏକ ଏକ ବିସ୍ତୃତ ଅଞ୍ଚଳର ଶାସକ ମୁଖ୍ୟ ରୂପେ ରହି ଆସିଥିଲେ, ଆଦିବାସୀ ସମାଜର କ୍ରମଶଃ ଆର୍ଯ୍ୟୀକୃତ ହୋଇ କ୍ଷତ୍ରିୟ ପ୍ରତିଷ୍ଠିତ ପାଇବା ମୂଳରେ ରାଜପୂତୀକରଣ ପ୍ରକ୍ରିୟା ରହିଛି ବୋଲି ମାନବ ବିଜ୍ଞାନୀ ସିହ୍ନା ମତ ଦେଇଛନ୍ତି । (Sinha : 1981 : 8) ପାରଂପରିକ ଆଦିବାସୀ ସମାଜ, ସଂସ୍କୃତି ଓ ଶାସନର ଏହା ହେଉଛି ରୂପାନ୍ତରକରଣ କାଳ । ଆଦିବାସୀ ଶାସକମାନେ ବ୍ରାହ୍ମଣମାନଙ୍କୁ ରାଜପୁରୋହିତ ରଖିବା ପୂର୍ବରୁ ନିଜ ଗୋଷ୍ଠୀର ଆଦିବାସୀ ଧର୍ମ-ମୁଖ୍ୟ ଝାଙ୍କର/ଜାନିମାନଙ୍କୁ ରାଜପୁରୋହିତ ରଖିଥିଲେ । ସେମାନଙ୍କ ବିବାହ, ସିଂହାସନରେ ଅଭିଷେକ ଉତ୍ସବାଦି ଆଦିବାସୀ ଧର୍ମୀୟ ମୁଖ୍ୟମାନଙ୍କ ପୂଜାରୀତି ଦ୍ୱାରା ଅନୁଷ୍ଠିତ ହେଉଥିଲା । ଏଥିପାଇଁ ଆଦିବାସୀ ଓ ରାଜନ୍ୟବର୍ଗଙ୍କର ସଂପର୍କ ନିବିଡ଼ ଥିଲା । କିନ୍ତୁ ମଧ୍ୟଯୁଗର ପରବର୍ତ୍ତୀ କାଳରେ ଶାସକ ମୁଖ୍ୟମାନେ ପାରଂପରିକ ବ୍ୟବସ୍ଥା ବଦଳରେ ନିଜଠାରୁ ଅନ୍ୟ ଏକ ଉଚ୍ଚକ୍ଷମତା ସଂପନ୍ନ ଶାସକ ସହିତ କ୍ଷତ୍ରିୟ ପ୍ରତିଷ୍ଠିତ ପାଇଁ ପାରିବାରିକ ସଂପର୍କ ରଖିଲେ ଓ ଏହି କାର୍ଯ୍ୟରେ କୁଶଳୀ ବ୍ରାହ୍ମଣମାନଙ୍କ ଭୂମିକା ଉଲ୍ଲେଖନୀୟ ହେଲା । ମଧ୍ୟଭାରତୀୟ ଗଣ୍ଡ ସଂପ୍ରଦାୟ ବରଭୂମ ଓ ଗ୍ରେଟ ନାଗପୁର ରାଜ୍ୟର ଭୂମିଜ ଓ ମୁଣ୍ଡା ସଂପ୍ରଦାୟ ବ୍ରାହ୍ମଣମାନଙ୍କ ଦ୍ୱାରା ସଂସ୍କୃତିକରଣ ପ୍ରକ୍ରିୟା ଦ୍ୱାରା କ୍ଷତ୍ରୀୟ ପ୍ରତିଷ୍ଠିତ ପାଇଥିଲେ । ଏହି ପରଂପରାରୁ ସୃଷ୍ଟ ରାଜ୍ୟପ୍ରାପ୍ତି ମିଥ୍ ଗୁଡ଼ିକର ସମଧର୍ମିତା ଦେଖି ସିହ୍ନା ଏଗୁଡ଼ିକର ଉଦ୍ଦେଶ୍ୟ

(motif) ଏକ ପ୍ରକାର ବୋଲି ମତ ଦେଇଛନ୍ତି । କିନ୍ତୁ ଲୋକ-ସଂସ୍କୃତି ବିଜ୍ଞାନ (folkloristrics) ର ସଂରଚନା ଦୃଷ୍ଟିରୁ ଉପରୋକ୍ତ ବଂଶର ରାଜ୍ୟପ୍ରାପ୍ତି ମିଥ୍ ଗୁଡ଼ିକର ବିଶ୍ଳେଷଣ କରି ଜଣାଯାଇ ଅଛି ଯେ, ରାମାୟଣ ମହାକାବ୍ୟର ମହାନ୍ ପରଂପରାରୁ ସଂପୃକ୍ତ ରାଜନ୍ୟ ବର୍ଗ ମିଥ୍ ଟିକୁ ଗ୍ରହଣ କରି ନିଜ ନିଜ ମିଥ୍ ସହ ସମୀକରଣ କରିଛନ୍ତି । ଭାରତରେ ସୂର୍ଯ୍ୟବଂଶ ଓ ଚନ୍ଦ୍ରବଂଶ ସହିତ ନିଜକୁ ସଂଯୋଜିତ କରିବା ପ୍ରକ୍ରିୟା ଏହି ରାଜ୍ୟପ୍ରାପ୍ତି ମିଥ୍ ଗୁଡ଼ିକୁ ଯଥେଷ୍ଟ ପ୍ରଭାବ ପକାଇ ଥିବାର ଦୃଷ୍ଟାନ୍ତ ମିଳେ । ରାମାୟଣରେ ଗର୍ଭବତୀ ସୀତାଙ୍କୁ ବାଲ୍ମିକୀ ଆଶ୍ରମରେ ବିସର୍ଜନ ଦେବା ସେଠି ଲବକୁଶ ଜନ୍ମ ହୋଇ ବୀରରୂପେ ନିଜ ରାଜ୍ୟକୁ ଫେରିପାଇବା ମୋଟିଫ୍ ମାନଙ୍କ ସହିତ ମଧ୍ୟଭାରତୀୟ ଆଦିବାସୀ ଗୋଷ୍ଠୀମାନଙ୍କ ରାଜ୍ୟପ୍ରାପ୍ତି ମିଥ୍ ର ବିଚିତ୍ର ସାମଞ୍ଜସ୍ୟ ରହିଅଛି । (Mishra : 1988 : 6-7)

**ଆଦିବାସୀ ଲୋକୋକ୍ତି** — ଆଦିବାସୀ ପ୍ରବାଦ ପ୍ରବଚନ ଛିଟା ନାଦିଆ, ଗାଳି ପ୍ରଭୃତିରେ ସେମାନଙ୍କର ସାମାଜିକ ବ୍ୟବହାର, ଚଳଣି ତଥା ପ୍ରଜାତିକ ଚରିତ୍ରର ସ୍ୱରୂପ ଉଦ୍‌ଘାଟିତ ହୋଇଥାଏ । ଲୋକଗୀତର ରୂପକ ଓ ପ୍ରତୀକମାନଙ୍କୁ ଜାଣିବା ପାଇଁ ଏହି ଲୋକୋକ୍ତି ଗୁଡ଼ିକର ଅନୁଶୀଳନର ଯଥେଷ୍ଟ ଆବଶ୍ୟକତା ରହିଛି । କାରଣ ଲୋକୋକ୍ତି ମଧ୍ୟରେ ଜାତି ମାନସିକତା ଯୁଗଯୁଗରୁ ସଂଚିତ । ସ୍ଥାନୀୟ ପରିବେଶରେ ବସ୍ତୁର ରୂପ, ଗୁଣ ଓ ସ୍ୱଭାବାଦି ବ୍ୟକ୍ତିର ରୂପ ଗୁଣ ସ୍ୱଭାବାଦି ସହିତ ତୁଳନା ହେବା ସଙ୍ଗେ ସଙ୍ଗେ ଏହି ସାଂସ୍କୃତିକ ଅଞ୍ଚଳର ରୂପକ ଗୁଡ଼ିକୁ ଓ ପ୍ରତୀକ ଗୁଡ଼ିକୁ କିପରି ଆଦିବାସୀର ସାମୂହିକ ମନ ସୃଷ୍ଟି କରିଛି ସେଗୁଡ଼ିକ ସ୍ପଷ୍ଟହୁଏ ଏହି ଲୋକୋକ୍ତିର ଅନୁଶୀଳନରେ ।

**ଲୋକନୃତ୍ୟ** — ଆଦିବାସୀ ସମାଜରେ ବିଶେଷ ଉତ୍ସବରେ ଲୋକବାଦ୍ୟ ଓ ନୃତ୍ୟର ବ୍ୟବହାର ସ୍ୱଭାବ ସିଦ୍ଧ । ଅବସର କାଳରେ ସୁଦ୍ଧା ଏହାର ଶିକ୍ଷା ପାରଂପରିକ । ଆବାଳ ବୃଦ୍ଧ-ବନିତା ବିବାହ ପର୍ବପର୍ବାଣିରେ ସଂଗୀତର ପୂର୍ଣ୍ଣ ବିନିଯୋଗ କରନ୍ତି । ପ୍ରତ୍ୟେକ ଗୋଷ୍ଠୀର ନିଜର ବାଦ୍ୟଯନ୍ତ୍ର ରହିଛି । ପ୍ରତ୍ୟେକ ଜାତିର ଚରିତ୍ର ସେହିମାନଙ୍କ ବାଦ୍ୟ ଯନ୍ତ୍ରର ବ୍ୟବହାର ତଥା ନୃତ୍ୟ ଭଙ୍ଗୀର ପ୍ରକାଶ କାଳରେ ଭିନ୍ନ ଭିନ୍ନ ରୂପେ ଦୃଷ୍ଟି ଗୋଚର ହୁଏ । ନୃତ୍ୟଗୀତ ମଧ୍ୟରେ ଶିକ୍ଷା, ମନୋରଞ୍ଜନ, ସମାଜୀକରଣ, ସାମୂହିକ ଅଂଶ ଗ୍ରହଣ ତଥା ନିଜକୁ ଅନ୍ୟ ରୂପରେ ପ୍ରକାଶ କରିବାର ପ୍ରବଣତା ରହିଛି । ଜୀବନ ଯେପରି ବର୍ଷ ବର୍ଷ ଧରି ଏକ ନିର୍ଦ୍ଦିଷ୍ଟ ଶୃଙ୍ଖଳା ମଧ୍ୟରେ ପୁନରାବୃତ୍ତି ମଧ୍ୟରେ ଅତିବାହିତ ହୁଏ ଆଦିବାସୀ ନୃତ୍ୟର ଶୃଙ୍ଖଳା ବି ସେହିପରି ଏକ ନିର୍ଦ୍ଦିଷ୍ଟ ଆଙ୍ଗିକ ମଧ୍ୟରେ ପ୍ରତିଭାତ । ଏବେ ଧାଙ୍ଗରା ଧାଙ୍ଗିଣୀ ବସା ଆଉ ନାହିଁ । କିନ୍ତୁ ବର୍ଷର ଧାର୍ମିକ ସାମାଜିକ ଉତ୍ସବରେ ଯେତେ ନାଚଗୀତ ହୁଏ ସେତିକରେ ହିଁ ସମାଜରେ ନୃତ୍ୟର ପାରଂପରିକତାକୁ ରକ୍ଷା କରାଯାଇଥାଏ ।

ଆଦିବାସୀ ନୃତ୍ୟ ସ୍ୱରୂପ ସାନ୍ତାଳମାନଙ୍କ ଘୁମୁରା ନୃତ୍ୟ ଗଣ୍ଡ, ଭୂଂଇଆ ଓ ଭତ୍ରାମାନଙ୍କର ମାନ୍ଦଳ ନୃତ୍ୟ, କନ୍ଧମାନଙ୍କର ଡ଼ାବଗୀତ ଓ ନୃତ୍ୟ, ପରଜା ତରୁଣୀମାନଙ୍କ ସମବେତ ନୃତ୍ୟ, ହୋଲି ନାଚ, ଦଣ୍ଡାରି ନାଚ, ବନଜାରା ମାନଙ୍କର ଉଣ୍ଡାନାଚ, ବନଜାରା ରମଣୀମାନଙ୍କର ଫାଗ୍ ନୃତ୍ୟ, ବିଝାଲ ତରୁଣୀ-ମାନଙ୍କର ଡ଼ାଲଖାଇନାଚ ବିଭିନ୍ନ ଧର୍ମୋତ୍ସବ କାଳୀନ ନୃତ୍ୟ ମାନଙ୍କରେ ସ୍ୱ ସ୍ୱ ଜାତିର ଆତ୍ମପ୍ରକାଶ କୌଶଳ ଓ ଆଙ୍ଗିକ ବିନ୍ୟାସର ସ୍ୱାତନ୍ତ୍ର୍ୟ ଜଣାପଡ଼େ । ଲୋକନାଟ୍ୟ ସ୍ୱରୂପ ଶ୍ରୀରାମ ଲୀଳା, ଶ୍ରୀକୃଷ୍ଣ ଲୀଳା, ଦଣ୍ଡନାଟ ରାମାୟଣ, ମହାଭାରତର ବହୁ ବଧ ହରଣ ଉପାଖ୍ୟାନ ସମୂହ ଲୌକିକ ନୃତ୍ୟବାଦ୍ୟର ସମବାୟରେ ଅଭିନୀତ ହୁଏ । ଭାରତୀୟ ପୁରାଣ ପରଂପରା ଲୋକନାଟ୍ୟ ମାଧ୍ୟମରେ ଯେତେ ବିସ୍ତରିତ ହୁଏ ତାହା ପୁରାଣ ଶ୍ରବଣ ବଂଚିତ ଜନ ସମୁଦାୟଙ୍କ ଜ୍ଞାନ ଆହରଣରେ ସହାୟକ ହୁଏ । ଏହାଛଡ଼ା ଦେଶିଆ ନାଟ ଉଭୟ ସ୍ଥାନୀୟ ସଂସ୍କୃତି ନାୟକ (culture hero) ଦୁଃସାହସୀ ବୀରର ଚରିତ୍ର ଓ ଜୀବନୀକୁ ନେଇ ଲୌକିକ ଭାଷା ସହିତ ଓଡ଼ିଆ ସଂଳାପ ଶୈଳୀରେ ପ୍ରଦର୍ଶିତ ହୁଏ । ଲୋକ ପୌର ନିରବଚ୍ଛିନ୍ନତାର ଏକ ବିଶିଷ୍ଟ ମାଧ୍ୟମ ରୂପେ ଲୋକନାଟ୍ୟର ଭୂମିକାର ତୁଳନା ନାହିଁ । ଅକ୍ଷର ଶିଖି ନଥିବା ଆଦିବାସୀ ଯୁବକମାନେ ଗୁରୁଙ୍କ ଠାରୁ ଶୁଣି ଶୁଣି ଗୀତ ସଂଳାପ ଶିଖି ନାଟକରେ ଭୂମିକା ନେଇ ସଫଳତାର ସହ ଅଭିନୟ କରନ୍ତି । ଏହି ଅନୁକରଣ ପ୍ରବୃତ୍ତିର ଫଳଶ୍ରୁତି ହେଉଛି ଭାରତୀୟ ମହାନ୍ ପରଂପରାର ଆଦିବାସୀ ପରଂପରାରେ ବିସ୍ତରଣ ତଥା ଲୋକ ପରଂପରାର ନୃତ୍ୟ ଓ ବାଦ୍ୟ ଲୋକ ପରଂପରାରେ ଆଦୃତ ।

ଆଦିବାସୀ ବହୁଳ ଅଞ୍ଚଳ ରୂପେ ତଥା ଧର୍ମକ୍ଷେତ୍ରରେ ଆଦିବାସୀ ଦେବତା ଶ୍ରୀଜଗନ୍ନାଥଙ୍କ ଦେଶ ରୂପେ ଓଡ଼ିଶା ସୁବିଦିତ । ଓଡ଼ିଶା ସାହିତ୍ୟର ଓ ସଂସ୍କୃତିର ଭିତ୍ତି ଏହିଠାରେ କିନ୍ତୁ ବହୁ କ୍ଷେତ୍ରରେ ଏହି ଭିତ୍ତି ଭୂମିରୁ ଓଡ଼ିଆ ସଂସ୍କୃତି ଓ ସାହିତ୍ୟର ଆଲୋଚନା ହେଉନାହିଁ । ଓଡ଼ିଶାର ପ୍ରଚଳିତ ଆଦିବାସୀ ଗୋଷ୍ଠୀମାନଙ୍କ ଜୀବନ୍ତ ସଂସ୍କୃତି ଓ ସାହିତ୍ୟର

ଜଳବାୟୁ ସଙ୍ଗେ ଆମର ସର୍ଜନଶୀଳ ଓ ସମୀକ୍ଷାତ୍ମକ ସାହିତ୍ୟିକମାନଙ୍କର ସଖ୍ୟ ସ୍ଥାପନ ହୋଇ ପାରୁନାହିଁ । ଭେରିଅର ଏଲ୍‌ୱିନ୍ କିମ୍ବା ଗୋପୀନାଥ ମହାନ୍ତିଙ୍କ ନିଷ୍ଠା ଆମ ପାଖରେ ନାହିଁ । ଆଦିବାସୀ ସଂସ୍କୃତିକୁ ଏକ ଉପନିବେଶବାଦୀ ଦୃଷ୍ଟିକୋଣ ଯେନ ଯଦି ଆମେ ପଠନପାଠନ କରୁଁ ତେବେ ତାହା ଓଡ଼ିଆ ସଂସ୍କୃତି ଓ ସାହିତ୍ୟ ଚର୍ଚ୍ଚାରେ ଏକ ସୁସ୍ଥ ପରିମଣ୍ଡଳ ସୃଷ୍ଟି କରି ପାରିବନାହିଁ । ଆମ ସଂସ୍କୃତି ଗଠନରେ ଏହି ଆଦିବାସୀ ସଂସ୍କୃତି କେତେ ବଦ୍ଧମୂଳ ତଥା ଏହାର ମହାଦାନନ କେତେ ଆମକୁ ପରିପୁଷ୍ଟ କରିଛି ତାହା ବିଚାର ଯୋଗ୍ୟ । ଏହି ପରିପ୍ରେକ୍ଷୀରେ ଆମେ ନିଜ ଭୂମିରୁ ନିଜ ସଂସ୍କୃତିକୁ ଚିହ୍ନି ଜାଣିବାକୁ ଚେଷ୍ଟା କରି ସେହି ଶାଶ୍ୱତ ମୂଲ୍ୟବୋଧର ସଂଗ୍ରହଣ ଓ ଜାତୀୟ ଜୀବନରେ ଏହାର ପୁନର୍ବିନ୍ୟାସ କରାନଗଲେ, ଆଦିବାସୀ ସଂସ୍କୃତି ଆଲୋଚନା ନିରର୍ଥକ ହୋଇଯିବ । ସହରରେ ଆଦିବାସୀ କଳା ଯେପରି ଏବେ ଗୃହମଣ୍ଡନ କରୁଛି, ଆଦିବାସୀର ସାମ୍ୟଦର୍ଶନ ଓ ବିଶ୍ୱ ଦୃଷ୍ଟି ସହଯୋଗ ସତ୍ୟ, ଅମାୟିକତା, ସାଧୁତା ଓ ତ୍ୟାଗ ଉପରେ ପ୍ରତିଷ୍ଠିତ ମୂଲ୍ୟବୋଧ ଯଦି ସହରୀ ଜନ ଜୀବନକୁ ଅଭିପ୍ରେରିତ କରେ ତେବେ ଆମ ଏହି ସଂସ୍କୃତି ଚର୍ଚ୍ଚାର କିଛି ମୂଲ୍ୟ ରହିଛି । କଠୋର ବାସ୍ତବତା ପୂର୍ଣ୍ଣ ଜୀବନ ସହିତ କାଳ୍ପନିକ ପ୍ରେମାନୁଭୂତିର ମିଶ୍ର ରାଗରେ ଯେପରି ସେ ଜୀବନକୁ ଜିଇବା ଓ ଉପଭୋଗ କରିବାରେ ଯେପରି ପରାଜୟ ସ୍ୱୀକାର କରେ ନାହିଁ ଆଜିର ପରିପେକ୍ଷୀରେ ସେହି ମୂଲ୍ୟବୋଧ ଶିକ୍ଷିତ ଓ ବସ୍ତୁବାଦୀ ସମାଜର ଅନୁକରଣୀୟ ଆଦର୍ଶ ହେବା ଉଚିତ ।



ସଂପାଦକ
ଆଦିବାସୀ ସଂସ୍କୃତି ଗବେଷଣା ପରିଷଦ
ସିନାପାଲି - ୭୬୭୧୦୮, କଳାହାଣ୍ଡି

# ଲୋକନୃତ୍ୟ - 'ଘୁମୁରା'

ଅଧ୍ୟାପକ ଶୈଳେନ୍ଦ୍ର ପ୍ରସାଦ ଆଚାର୍ଯ୍ୟ

ବିଭିନ୍ନ ଶୈଳୀର ଅନେକ ଲୋକ ନୃତ୍ୟ କଳାହାଣ୍ଡି ଅଞ୍ଚଳରେ ସନ୍ଧାନ କରାଯାଇପାରେ, ଯେଉଁ ଗୁଡ଼ିକ ନିଜ ସ୍ୱ ସ୍ୱ କଳାତ୍ମକ ବୈଶିଷ୍ଟ୍ୟକୁ ବଜାୟ ରଖି ଏଠାକାର ଜନଜୀବନ ସହ ସଂଶ୍ଳିଷ୍ଟ ଅଛନ୍ତି ଏବଂ ପ୍ରତ୍ୟେକେ ଏ ମାଟିର ବଳିଷ୍ଠ ପୂର୍ଣ୍ଣ ସାଂସ୍କୃତିକ ଐତିହ୍ୟକୁ ରଖିଛନ୍ତି । ସେ ମଧ୍ୟରୁ ଘୁମୁରା ନୃତ୍ୟ ଅନ୍ୟତମ । ଓଡ଼ିଶାର ଲୋକ ନୃତ୍ୟ ପରଂପରାରେ ଏ ନୃତ୍ୟର ଏକ ମର୍ଯ୍ୟାଦାବନ୍ତ ସ୍ଥାନ ରହିଛି । ସଂପ୍ରତି ଏହାର ରହସ୍ୟମୟ ଇତିହାସକୁ ଉନ୍ମୋଚନ କରିବା ପାଇଁ ସମାଲୋଚକ ମାନଙ୍କ ମଧ୍ୟରେ ପ୍ରବଣତା ପ୍ରକାଶ ପାଇଛି । କିନ୍ତୁ ଏପର୍ଯ୍ୟନ୍ତ ଏହି ନୃତ୍ୟର କୌଣସି ବିଧିବଦ୍ଧ ଗବେଷଣାତ୍ମକ ଆଲୋଚନା କରାଯାଇ ନାହିଁ । ଉକ୍ତ ପ୍ରବନ୍ଧରେ ଘୁମୁରାର ସମ୍ୟକ କେତୋଟି ଆଙ୍ଗିକ ଆତ୍ମିକ ବିଶେଷତ୍ୱ ସଂପର୍କରେ ହିଁ ଆଲୋକପାତ କରାଯାଇଛି । ଅତଏବ କ୍ରମାନ୍ୱୟରେ ଏହାର ଆଲୋଚନା କରାଯାଉ ।

**ସୃଷ୍ଟି ସମୟ :-** ଘୁମୁରା ନୃତ୍ୟର ଉତ୍ପତ୍ତି କାଳ ସଂପର୍କରେ ଅନେକ ମତାମତ ନିଆଯାଇ ଦେଖାଯାଏ । କେହି କେହି ଏହା ପୁରାଣ ବର୍ଣ୍ଣିତ ଲଙ୍କାରେ ପ୍ରଥମେ ସୃଷ୍ଟି ଲାଭ କରିଥିଲା ବୋଲି ମତବ୍ୟକ୍ତ କରୁଥିବା ବେଳେ ଆଉ କେତେକ ପ୍ରାକ୍ଐତିହାସିକ ଯୁଗରୁ ଏ କାଳର ଉତ୍ପତ୍ତି ଘଟିଛି ବୋଲି ବିଶ୍ୱାସ କରନ୍ତି । କିନ୍ତୁ ଏପ୍ରକାର ଯୁକ୍ତିମୂଳରେ ବଳିଷ୍ଠ ପ୍ରମାଣରେ ଅଭାବତା ଯୋଗୁଁ ଗ୍ରହଣ କରାଯାଇ ପାରୁନାହିଁ । କେବଳ କଳ୍ପନା ତଥା କିମ୍ବଦନ୍ତୀ ଓ ପୌରାଣିକ ଆଖ୍ୟାନକୁ ଆଧାର କରି ଏଭଳି ମତ ପୋଷଣ କରାଯାଇଛି ।

ଘୁମୁରା ଯେ ଏକ ପ୍ରାଚୀନତମ ବାଦ୍ୟ ଏହା ସର୍ବ ସମ୍ମତ । ଏହି ହେତୁ ଏ ଅଞ୍ଚଳର ପ୍ରାଚୀନତମ ସମୃଦ୍ଧ ସଭ୍ୟତାର ସ୍ଥିତି କାଳରେ ହିଁ ଏଭଳି ଏକ ଉନ୍ନତ କଳା କୌଶଳ ପ୍ରଯୁକ୍ତ ବାଦ୍ୟଯନ୍ତ୍ରର ସୃଷ୍ଟି

---

କଳାହାଣ୍ଡିର ମର୍ଯ୍ୟାଦା ଓ ଅଭିରୁଚିର ବାର୍ତ୍ତାବହ 'ପଶ୍ଚିମାର' ସୌଜନ୍ୟ ସଂପାଦକ ଶୈଳେନ୍ଦ୍ର ପ୍ରସାଦ ଆଚାର୍ଯ୍ୟ ମଦନପୁର ରାମପୁର ଇଲାକାରେ ସାହିତ୍ୟ ସାଧନାରତ । କଳାହାଣ୍ଡି ଭଳି ଏକ ପଛୁଆ ଅଞ୍ଚଳରେ ବିଚ୍ଛକ ସାହିତ୍ୟ ସୃଷ୍ଟି ପାଇଁ ଆଚାର୍ଯ୍ୟ ବାବୁ ଓ ପଶ୍ଚିମା ପରିବାର ଅଭିନନ୍ଦନୀୟ ତାଙ୍କ ପଶ୍ଚିମାବଲୋକନ ଏ ଅଞ୍ଚଳର ସାହିତ୍ୟ ଓ ସାଂସ୍କୃତିକ ଧାରାକୁ ଉଜ୍ଜୀବିତ କରିବ ଏହା ନିଃସନ୍ଦେହରେ କୁହାଯାଇ ପାରେ ।

ଘୁମୁରା ଆଜି ଆଉ କଳାହାଣ୍ଡି ବା ଓଡ଼ିଶାର ହୋଇ ରହିନାହିଁ । ସୁଦୂର ପଶ୍ଚିମ ଜର୍ମାନୀ ଓ ରୁଷିଆରେ ଏହା ଭାରତ ଉତ୍ସବ ର ଅନ୍ୟତମ ମୁଖ୍ୟ ଆକର୍ଷଣ ରୂପେ ସମଗ୍ର ଭାରତ ବର୍ଷର ସମ୍ମାନ ବୃଦ୍ଧି କରିଛି ।

ମଦନପୁର ରାମପୁର କଲେଜର ଓଡ଼ିଆ ଅଧ୍ୟାପକ ରୂପେ କାର୍ଯ୍ୟରତ ଶ୍ରୀ ଆଚାର୍ଯ୍ୟ ଏଠାରେ ଲୋକନୃତ୍ୟ ଘୁମୁରା ଉପରେ ଏକ ଗବେଷଣାତ୍ମକ ପ୍ରବନ୍ଧ ଉପସ୍ଥାପନା କରିଛନ୍ତି ।

---

ଉପଯୋଗକୁ ବିଶ୍ୱାସ କରାଯାଇପାରେ । ଖ୍ରୀଷ୍ଟୀୟ ୪/୫ ଶତାବ୍ଦୀ ବେଳକୁ କଳାହାଣ୍ଡି ଭୂଇଁରେ ଏକ ଉନ୍ନତ ସଂସ୍କୃତି ସମ୍ପନ୍ନ ଜାତି ବସବାସ କରିଯାଇଥିବାର ପ୍ରମାଣ ମାରାଗୁଡ଼ା ଉପତ୍ୟକା ଓ ନଳ ବଂଶୀରାଜାଙ୍କ ଦ୍ୱାରା ଶାସିତ ଅସୁରଗଡ଼ ( ନର୍ଲ ନିକଟସ୍ଥ ) ଦୁର୍ଗରୁ ପ୍ରାପ୍ତ ହୁଏ । ଏ ଦୁଇ ପ୍ରତ୍ନ ପୀଠରୁ ଆବିଷ୍କୃତ ବିଭିନ୍ନ ମୂର୍ତ୍ତି, ବାଦ୍ୟଯନ୍ତ୍ର, ମୁଦ୍ରା ତଥା ଇଟାର ପ୍ରକୋଷ୍ଠ ସମୂହରୁ ଖ୍ରୀଷ୍ଟୀୟ ୪/୫ ଶତାବ୍ଦୀ ବେଳକୁ କଳାହାଣ୍ଡିରେ ନଗର ସଂସ୍କୃତିର ଧାରା ପ୍ରବାହିତ ହୋଇ ଥିଲା ବୋଲି ପଣ୍ଡିତ ମାନେ ମତ ଦେଇଥାନ୍ତି । ତେଣୁ ଘୁମୁରାର ଉନ୍ମେଷ କାଳକୁ ଖ୍ରୀଷ୍ଟୀୟ ୪/୫ ଶତାବ୍ଦୀ ବୋଲି ଗ୍ରହଣ କଲେ ସମୀଚୀନ ହେବ । ଏହି ବିଶ୍ୱାସକୁ ଅଧିକ ବଳିଷ୍ଠ କରେ ସମସାମୟିକ ନେହେନା ( କାଳାହାଣ୍ଡି ଓ ମଧ୍ୟ ପ୍ରଦେଶର ସୀମାରେ ଅବସ୍ଥିତ ) ର ଭୂଖୋଦନରୁ ପ୍ରାପ୍ତ ମୃତ୍ତିକା ନିର୍ମିତ ଘୁମୁରାର ଏକ ପ୍ରାଚୀନ କାଳକୃତି । "A terracotta Ghumura instrument has been discovered at Nehena site and is exibited at Khariar Branch Museum ( Ghumura Dance - Jitamitra Singhdeo )

**ନାମ କରଣ :-** ଆଲୋଚକ ମୂର୍ତ୍ତି ମନ୍ତ୍ର ସାହୁଙ୍କ ମତରେ "ଏହାର ନାମକରଣ ତାତ୍ତ୍ୱିକ ତଥା ଅର୍ଥପୂର୍ଣ୍ଣ । ବାଦ ବନ୍ଧର ସଙ୍କେତ ହେଲା ଡମ୍ବରୁ, ଏହି ଆଦ୍ୟ ବାଦ୍ୟଯନ୍ତ୍ରର ପରବର୍ତ୍ତୀ ସଂସ୍କରଣ ଓ ଉନ୍ନତ ରୂପ ଘୁମୁରା ଅଟେ । ଫଳତଃ ଧ୍ୱନି ଉତ୍ପନ୍ନ କରୁଥିବା ଏହାର ଉପରିଭାଗ ଡମ୍ବରୁ ସଦୃଶ୍ୟ ଅଟେ । ଏଣୁ 'ଘମ୍ + ଉ + ର' ହୋଇ ଘୁମୁରା ହେବା ସ୍ୱାଭାବିକ ତଥା ଯୁକ୍ତିସଙ୍ଗତ ମନେହୁଏ ।" (ଗିରିଝର, କଳାହାଣ୍ଡି କଳା

ଓ ସଂସ୍କୃତ ବିଶେଷଜ୍ଞ—୧୯୮୯) 'ଘୁମ୍' ର ଅର୍ଥ ମାଠିଆ, 'ଉ' ଯେ ଉମା ବା ଶିବ ଓ 'ର' ଅର୍ଥ ରବ। ଏଣୁ ଉମାଙ୍କର ପ୍ରିୟବାଦ୍ୟ ଯନ୍ତ୍ର [ଡମ୍ବରୁ] ରୁ ବିବର୍ତ୍ତିତ ଘୁମ୍ ସଦୃଶ ବାଦ୍ୟଯନ୍ତ୍ରର ନାମ ଘୁମୁରା। ଅବଶ୍ୟ ଏ ପ୍ରକାର ନାମକରଣ ଶ୍ରୀଯୁକ୍ତ ପାଣିଙ୍କର ବୁଦ୍ଧିମତ୍ତାର ପରିଚୟ ହୋଇପାରେ। କିନ୍ତୁ ଏହା ପ୍ରମାଦଯୁକ୍ତ।

ଲୋକନୃତ୍ୟର ବିଶେଷତ୍ୱ ହେଉଛି ଯେ ଏହା କୌଣସି ଅଭିଜାତ ଓ ସୁସଂସ୍କୃତ ସଂପ୍ରଦାୟର ଲୋକଙ୍କଠାରୁ ସୃଷ୍ଟି ନ ହୋଇ ସାଧାରଣ ଜନଜୀବନରୁ ଉଦ୍‌ଭୂତ ହୋଇଥାଏ। 'ଘୁମୁରା' ଏକ ଲୋକନୃତ୍ୟ। ସ୍ୱତଃସ୍ଫୂର୍ତ୍ତିତା ଏହାର ମୁଖ୍ୟ ବୈଶିଷ୍ଟ୍ୟ। ଆଦିବାସୀର ଖିଆଲ ମନରୁ ହିଁ ଏହା ଜନ୍ମଲାଭ କରିଛି। ତେଣୁ ଏହାର ନାମକରଣ ବେଳେ ସରଳମାନବ 'ଘୁମ୍ + ଉ + ର' ନ୍ୟାୟରେ ବୁଦ୍ଧି ଖଟାଇ, ଶବ୍ଦକୁ ଭାଙ୍ଗି ଯୋଡ଼ି ଏବଂ ପ୍ରତ୍ୟେକ ଶବ୍ଦର ତାତ୍ତ୍ୱିକ ଅର୍ଥକୁ ହୃଦୟଙ୍ଗମ କରି ଏହାର ନାମକରଣ କରିଥିବ। ଏହା ଆଦୌ ସମ୍ଭବ ନୁହେଁ। ବରଂ ମନୁଷ୍ୟ ଯେତେବେଳେ ଏ ନୂତନ ବାଦ୍ୟଯନ୍ତ୍ରଟିକୁ ଆବିଷ୍କାର କଲା ଏବଂ ତାକୁ ବଜାଇଲା ବେଳେ ତହିଁରୁ ଯେଉଁ ଧ୍ୱନି ନିଃସୃତ ହେଲା, ସେଇ ଉପଲବ୍ଧ ଧ୍ୱନି ଅନୁସାରେ ହିଁ ଏହାର ନାମକରଣ କରାଯାଇଥିବ।

ପୂର୍ଣ୍ଣଚନ୍ଦ୍ର ଭାଷା କୋଷରେ ଘୁମୁରା ଶବ୍ଦକୁ ଏକ ଧ୍ୱନ୍ୟାନୁକରଣ ଶବ୍ଦରୂପେ ଗ୍ରହଣ କରାଯାଇ 'ଘୁମୁଘୁମୁ' ଧ୍ୱନିରୁ ଏହାର ଏପରି ନାମକରଣ ହୋଇଛି ବୋଲି ଉଲ୍ଲେଖ କରାଯାଇଛି। ପ୍ରକୃତରେ ଏହାର ଧ୍ୱନିକୁ ଭଲଭାବରେ ଶ୍ରବଣକଲେ ଏହା ଘମୁର ଘମୁର ବାଜୁଥିବାର ଉପଲବ୍ଧ ହୁଏ। ଘମୁର ଘମୁର ବାଜୁଥିବାରୁ ଏହାର ନାମ ଘମୁରା ହୋଇଥିବ। ସାରଳା ମହାଭାରତରେ ମଧ୍ୟ ଘମୁରା ଘମୁଘମୁ ବାଜେ ବୋଲି ଉଲ୍ଲେଖ କରାଯାଇଛି। ଯଥା —

"ଢୋଲ ମାଦଳ ଆଦି ଯେ ଘମୁରା ବାଜଇ

ଘମୁରା ଯେ ଘମୁଘମୁ ହୋଇ ଗରଜଇ (ମଧ୍ୟପର୍ବ)

ଅଧିକନ୍ତୁ ବସ୍ତର, ଛତିଶଗଡ ଓ କଳାହାଣ୍ଡିର କେତେକ ଅଞ୍ଚଳରେ ମାଠିଆକୁ 'ଘୁମ୍‌ରା' ବୋଲି କହିଥାନ୍ତି। ତେଣୁ 'ଘୁମୁରା' ରେ ନିର୍ମିତ ବାଦ୍ୟ ଯନ୍ତ୍ରର ନାମ ଘୁମୁରା ହୋଇଥିବ ବୋଲି ଅଧିକ ଯୁକ୍ତି ସଂଗତ ମନେ ହୁଏ। କାରଣ ଏ ଅଞ୍ଚଳୀୟ ପ୍ରତ୍ୟେକ ଆଦିବାସୀ ବାଦ୍ୟଯନ୍ତ୍ର ଗୁଡ଼ିକ ଯଥା — ଢାପ, ଢାପ, ଖଞ୍ଜଣି, ନିଶାଣ ଘଡ଼ୁକୀ ପ୍ରଭୃତିରେ ଯେଉଁ ଉପକରଣଟି ଉପରେ ଚର୍ମ ଗୁଡ଼ୁଣୀ କରାଯାଇଥାଏ, ସେଇ ଉପକରଣଟିର ଆକୃତି ଆଦିବାସୀ ସମାଜରେ ନିତ୍ୟ ବ୍ୟବହୃତ ଅନେକ ସାମଗ୍ରୀର ଆକୃତି ସହ ସମାନ। ନିଶାଣର ଆକୃତି ଠିକ ଗୋଟିଏ ବଡ଼ ବେଲା ବା ଏଠାକାର ଭାଷାରେ 'ଖୁମ୍ବା' ସଦୃଶ। ଢାପ, ଡସଲା ବା ତେଲେନ୍ ସଦୃଶ ଏବଂ ଖଞ୍ଜଣୀ ଓ ଢ଼ପର ଆକୃତି ଫେଣ୍ଟିବା [ବାଉଁଶପାଟି ନିର୍ମିତ ଝୁଡ଼ି ସଦୃଶ

ହୋଇଥାଏ। ଘଡ଼ୁକୀ ଠିକ୍ ମାଣ (ଧାନ ମପା ଉପକରଣ) ର ଆକୃତିକୁ ବହନ କରେ। ଅନୁରୂପେ ଘମୁରାର ଆକୃତି ମଧ୍ୟ ଅକ୍ଷୁର୍ଣ୍ଣଭାବେ ମାଠିଆ ବା ସୁରେଇ ଭଳି। ତେଣୁ ଅନୁମିତ ହୁଏ ଯେ, ଆଦିବାସୀ ମାନଙ୍କ ଜୀବନ ଚର୍ଯ୍ୟା ସହ ଯେଉଁ ସବୁ ସାମଗ୍ରୀ ସଦାସର୍ବଦା ସଂଶ୍ଳିଷ୍ଟ ଥିଲା ଏବଂ ଯେଉଁ ଗୁଡ଼ିକ ସେମାନେ ନିତ୍ୟ ସନ୍ଦର୍ଶନ କରୁଥିଲେ ଓ ତାର ସଂସ୍ପର୍ଶରେ ଆସୁଥିଲେ ସେଇ ସବୁ ଉପକରଣର ଭିତ୍ତିରେ ଉପରୋକ୍ତ ବାଦ୍ୟଯନ୍ତ୍ରଗୁଡ଼ିକର ସୃଷ୍ଟି ଚେତନାଟି ଉଦ୍‌ଭୂତ ହୋଇଛି। ସେଇ ହେତୁ ଉପକରଣର ନାମାନୁଯାୟୀ ଡସଲା ରେ ନିର୍ମିତ ବାଦ୍ୟ ଯନ୍ତ୍ରର ନାମ ଡାପା ଏବଂ ଘୁମୁରୀ ରେ ନିର୍ମିତ ବାଦ୍ୟଯନ୍ତ୍ରର ନାମ ଘୁମୁରା ରଖାଯାଇଥିବ ବୋଲି ହୃଦବୋଧ ହୁଏ। ସରଳ ଆଦିବାସୀ ଜୀବନ କର୍ମକାଣ୍ଡର ସଂପାଦନା ସୁବିଧା ପାଇଁ ନିଜ ପରିବେଶ ଉପଲବ୍ଧ ବିଭିନ୍ନ ସାମଗ୍ରୀକୁ ନେଇ ନାନାବିଧ ଉପକରଣର ନିର୍ମାଣ କୌଶଳ ଚିନ୍ତାକରିଥିଲା। ଯେପରି ଶିକାର କର୍ମ ପାଇଁ ଧନୁଶର, ବର୍ଚ୍ଛା ତଥା ପ୍ରସ୍ତରର ହାତ ହତିଆର ସହ କୃଷିକର୍ମ ଓ ଘରେଇ ଚଳଣି ପାଇଁ କାଠ ଓ ମାଟିରେ ବିଭିନ୍ନ ସାମଗ୍ରୀ ନିର୍ମାଣ କରିଥିଲା, ସେହିପରି ନିଜ ମନୋରଞ୍ଜନାତ୍ମକ ଅଭିଳାଷର ପରିପୂରଣ ନିମନ୍ତେ ପରିବେଶଗତ ଉପକରଣର ଭିତ୍ତିରେ କଳାକୌଶଳ ପ୍ରୟୋଗକରି ବିଭିନ୍ନ ବାଦ୍ୟଯନ୍ତ୍ର ମଧ୍ୟ ନିର୍ମାଣଥିଲା। କାରଣ ସମାଜରେ ଅର୍ଥ ନୈତିକ ସ୍ଥିତି ଉପରେ ମନୁଷ୍ୟର ସୌନ୍ଦର୍ଯ୍ୟବୋଧ ନିର୍ଭର କରେ। ତେଣୁ ଘମୁରାର ସୃଷ୍ଟି ଚେତନାଟି ମଧ୍ୟ ସେହିପରି ଆଦିବାସୀର ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ 'ଘୁମ୍‌ରା' ର ଶବ୍ଦଗତ (କାରଣ ଫମ୍ପା ମାଠିଆରୁ ମଧ୍ୟ ସୁନ୍ଦର ଶବ୍ଦ ନିଃସୃତ ହୁଏ) ଆଧାରରୁ ଉଦ୍‌ଭୂତ ହୋଇ ତାହାର ନାମାନୁସାରେ ଘମୁରା ହୋଇଥିବ ବୋଲି ବିଶ୍ୱାସ କଲେ ଅଧିକ ଯୁକ୍ତିଯୁକ୍ତ ହେବ।

ଘମୁରାର ବିକାଶ କ୍ରମକୁ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ। ଆଦି ପର୍ଯ୍ୟାୟରେ ଘମୁରା ଏକ ଆଦିବାସୀ ନୃତ୍ୟ ରୂପେ ତତ୍କାଳୀନ ସମାଜରେ ପ୍ରଚଳିତ ଥିଲା। ଏ ନୃତ୍ୟ ସହ ଆଦିବାସୀ ସଂସ୍କୃତିର ନିବିଡ଼ ସଂପର୍କକୁ କୌଣସିମତେ ଅସ୍ୱୀକାର କରାଯାଇ ପାରିବ ନାହିଁ। ଏହାର ପରିବେଷଣ ଶୈଳୀ, ବେଶ ପୋଷାକ ଏବଂ ଘମୁରା ତଥା ଏହା ଅନ୍ୟାନ୍ୟ ସହଯୋଗୀ ବାଦ୍ୟଯନ୍ତ୍ରର ନିର୍ମାଣ ପ୍ରକ୍ରିୟା ପ୍ରତି ଦୃଷ୍ଟିପାତ କଲେ ଏହା ଯେ ଏକ ଆଦିବାସୀ ନୃତ୍ୟ, ତାହା ସ୍ପଷ୍ଟତଃ ପ୍ରମାଣିତ ହୁଏ।

**ନିର୍ମାଣ ପ୍ରକ୍ରିୟା :—** ଆଦିବାସୀମାନଙ୍କର ମନୋରଞ୍ଜନାତ୍ମକ କାର୍ଯ୍ୟ କ୍ରମ ସହ ସଂପୃକ୍ତଥିବା ବାଦ୍ୟଯନ୍ତ୍ର ଗୁଡ଼ିକର ଦୁଇଟି ମୁଖ୍ୟ ବିଶେଷତ୍ୱ ଲକ୍ଷ୍ୟ କରାଯାଏ। ପ୍ରଥମତଃ ଏହା ଉତ୍ତର ଭାରତୀୟ ବାଦ୍ୟଯନ୍ତ୍ର ସଦୃଶ ଦ୍ୱୟ ପାର୍ଶ୍ୱଯୁକ୍ତ ନ ହୋଇ ଏକ ପାର୍ଶ୍ୱ ବିଶିଷ୍ଟ ହୋଇଥାଏ ଏବଂ ଦ୍ୱିତୀୟତଃ ପ୍ରତ୍ୟେକ ବାଦ୍ୟକୁ ଶରୀରର ଯେ କୌଣସି ଅଙ୍ଗରେ ଧାରଣ କରି ବାଦକମାନେ ତାଳେ ତାଳେ ସ୍ୱତଃସ୍ଫୂର୍ତ୍ତି ନୃତ୍ୟଭଙ୍ଗୀ ମଧ୍ୟ ପ୍ରଦର୍ଶନ କରାଯାଏ। ନୃତ୍ୟ ଆଦିବାସୀଙ୍କର ଜୀବନର ଧର୍ମ। ତେଣୁ ସେ

ଯେଉଁ ପ୍ରକାରର ବାଦ୍ୟ ନିର୍ମାଣ କରନ୍ତୁ ନା କାହିଁକି, ତାପରେ ତାହାକୁ ସ୍ୱ ଅଙ୍ଗରେ ଧାରଣ କରି, ବାଦନ ଓ ନର୍ତ୍ତନ ଏ ଉଭୟ କ୍ରିୟା ସଂପାଦନ କରାଯାଇ ପାରିବ ସେ ବିଷୟ ପ୍ରତି ସେ ସଚେତନ ଥିଲା । ନିଶାଣ, ତାସା, ଖଞ୍ଜଣି, ଚଡୁକୀ, ଡାପ ଏ ସମସ୍ତ ଏକ ମୁହଁ ଯୁକ୍ତ ଆଦିବାସୀ ଅଞ୍ଚଳୀୟ ବାଦ୍ୟଯନ୍ତ୍ର । ନିଶାଣ ଓ ତାସାକୁ ରସିଦ୍ୱାରା ଯଥାକ୍ରମେ କଟି ଓ ବେକରେ ଝୁଲାଇ ବାଦନ କରାଯାଏ ଅଥବା ବେଳେ ଖଞ୍ଜଣିକୁ ହସ୍ତରେ ତଥା ଡାପ ଓ ଚଡୁକୀକୁ କକ୍ଷଦେଶରେ ଧାରଣ କରି ବାଦନ କରାଯାଇଥାଏ । ଠିକ ସେହିପରି ଘୁମୁରାକୁ ରସି ଦ୍ୱାରା ଉଦର ଭାଗରେ ଭିଡାଯାଇ ବଜାଯାଏ । ଆଦିବାସୀ ବାଦ୍ୟଯନ୍ତ୍ର ଗୁଡ଼ିକ ବସି ବଜାଇବା ପାଇଁ ଉଦ୍ଦିଷ୍ଟ ନୁହେଁ । ଘୁମୁରା ଠିକ ଏହି ବୈଶିଷ୍ଟ୍ୟର ଆଧାରରେ ନିର୍ମିତ ।

ଘୁମୁରାର ଉଚ୍ଚତା ସାଧାରଣତଃ ଏକ ଫୁଟ୍ ଓ ମୁହଁ ଭାଗର ଗୋଲେଇ ୫ ରୁ ୬ ଇଞ୍ଚ ଭିତରେ ହୋଇଥାଏ । ଉଦର ଭାଗର ଆକାର ଠିକ୍ ସୁରେଇ ଭଳି । ଏହାର ମୁହଁକୁ ଗୋଧି ଚର୍ମ ଦ୍ୱାରା ଝିଙ୍କର ଅଠା ଦେଇ ଛାଉଣି କରାଯାଇଥାଏ । ନିମ୍ନଭାଗରେ ଏକ ଭୁଣ୍ଡି ଥାଏ ଓ ତହିଁରେ ରସିର ବନ୍ଧନ ଦେଇ କଟି ଦେଶରେ ଭିଡାଯାଏ ଏବଂ ମୁହଁରେ ସଂଯୁକ୍ତ ରସିକୁ ପଇତା ଧାରଣ କଲା ସଦୃଶ ସ୍କନ୍ଧ ଓ କକ୍ଷ ମଧ୍ୟ ଦେଇ ପୃଷ୍ଠ ଭାଗରେ କଣ୍ଠି ପକାଇ ଘୁମୁରା ଝୁଲାଇ ଦିଆଯାଏ । ଫଳତ ଘୁମୁରା ବାଦନ ତାହାକୁ ଦୁଇ ହସ୍ତରେ ବାଦନ ପୂର୍ବକ ନିର୍ବିଘ୍ନରେ ନୃତ୍ୟ କରିପାରେ ।

**ରଣବାଦ୍ୟ ଘୁମୁରା** — କ୍ରମବିକାଶର ଦ୍ୱିତୀୟ ପର୍ଯ୍ୟାୟରେ ଘୁମୁରା ଏକ ରଣବାଦ୍ୟ ରୂପେ ସମ୍ମାନ ଲାଭ କଲା । ଏଠାରେ ଲକ୍ଷଣୀୟ ଯେ ତତ୍‌କାଳୀନ ରାଜାରାଜୁଡ଼ା ସମୟରେ କୌଣସି ବାଦ୍ୟଯନ୍ତ୍ର କେବଳ ରଣବାଦ୍ୟ ରୂପେ ସ୍ୱତନ୍ତ୍ର ଗୋଷ୍ଠୀର ପର୍ଯ୍ୟାୟଭୁକ୍ତ ନ ଥିଲା । ତଥାକଥିତ ସମସ୍ତ ସମାଜ ପ୍ରଚଳିତ ସମସ୍ତ ବାଦ୍ୟଯନ୍ତ୍ର ରାଜାମହାରାଜାମାନେ ଯୁଦ୍ଧାଭିଯାନ ସମୟରେ ଏକ ବିରାଟକାୟ ପଟୁଆରର ଆୟୋଜନ କରି ଚତୁର୍ଦ୍ଦିଗ ପ୍ରକମ୍ପିତ କରିବା ଉଦ୍ଦେଶ୍ୟରେ ତଥା ଶତ୍ରୁ ମନରେ ଭୟ ଓ ସୈନିକ ମନରେ ବୀରତ୍ୱର ଉନ୍ମାଦନା ଆଣିବା ପାଇଁ ପରିବେଷଣ କରୁଥିଲେ, ତାହାର ଅନେକ ଦୃଷ୍ଟାନ୍ତ ପୁରାଣ ଶାସ୍ତ୍ରମାନଙ୍କରୁ ଦିଆଯାଇ ପାରିବ । ଯଥା —

ସାରଳା ମହାଭାରତ "କଡ଼ା ମର୍ଦ୍ଦଳ ଘୁମୁରା ନିଶାଣ ଦାଉଣ୍ଡି
ହୁଳହୁଳି ନାଦେ ନାଟ ଖେମଟାରେ ମଣ୍ଡି"

(ଆଦିପର୍ବ)

କଡ଼ା ଘୁମୁରା ବାଜନ୍ତି ତହିଁ ଘନଘନ
ତବସେ ନ ଦିଶେ ଦିନକରର କିରଣ (ମଧ୍ୟପର୍ବ)

ଦାଣ୍ଡି ରାମାୟଣ — ଘୁମୁଘୁମୁ ଘୁମୁରା ଭେରୀ କଂସାଳ ମର୍ଦ୍ଦଳ
ମୃଦଙ୍ଗ ଶବ୍ଦ ଭେରୀ ଶବଦ ବହଳ ।

ଚଣ୍ଡୀ ପୁରାଣ — ବାଜଇ କମ କାହାଳୀ ଦାଉଣ୍ଡି ଘୁମୁରା
କାଦମ୍ବିନୀ ପାନକରି ନାଚନ୍ତି ଅସୁର ।
କଡ଼ା ମୃଦଙ୍ଗ ମର୍ଦ୍ଦଳ ଘୁମୁରା ସୌରକ୍ଷ୍ଟ୍ର
ବାଜଇ ମତ୍ତ ରଙ୍ଗରେ ନାଚ ଖେମଟା ନାଟ ।

ପୁରାଣ ଉଲ୍ଲିଖିତ ଯୁଦ୍ଧ ସମୟର ଏକତ୍ର ବାଜୁଥିବା ବାଦ୍ୟ ସମୂହକୁ ନେଇ ସଂପ୍ରତି ଓଡ଼ିଶାରେ ଦୁଇ ସ୍ୱତନ୍ତ୍ର ଶୈଳୀର ଲୋକ ନୃତ୍ୟ ପ୍ରଚଳିତ ଥିବାର ଲକ୍ଷ୍ୟ କରାଯାଏ । ସେଇଟି ହେଲା ପଶ୍ଚିମ ଓଡ଼ିଶାର ଡମ୍‌ବଜା ବା ସିଙ୍ଗବଜା ଓ ଦ୍ୱିତୀୟଟି ଘୁମୁରା ନାଚ । ଏ ଦୁଇଟି ନୃତ୍ୟରେ ପ୍ରତ୍ୟେକ କଳାକାର ଯେ କୌଣସି ଗୋଟିଏ ପ୍ରକାରର ବାଦ୍ୟଯନ୍ତ୍ରକୁ ଶରୀରରେ ଧାରଣକରି ସମବେତ ଭାବେ ବାଦ୍ୟର ଛନ୍ଦେ ଛନ୍ଦେ ନୃତ୍ୟ କରିଥାନ୍ତି । ସିଙ୍ଗବଜାର କଳାକାରମାନେ ଢୋଲ, ମହୁରି, ଝାଂଜ, ନିଶାଣ ଓ ତାସା ପ୍ରଭୃତି ବାଦ୍ୟଯନ୍ତ୍ର ଏକତ୍ର ବାଦନ କରୁଥିବା ବେଳେ ଘୁମୁରାରେ ନିଶାଣ, ଝାଂଜ ମହୁରି ଓ ମର୍ଦ୍ଦଳର ପରିବେଷଣ କରାଯାଇଥାଏ ।

**ନୃତ୍ୟ ଶୈଳୀ** — କ୍ରମ ବିକାଶ ତୃତୀୟ ପର୍ଯ୍ୟାୟରେ ଏ ନୃତ୍ୟର ସ୍ୱରୂପରେ ପରିବର୍ତ୍ତନ ଘଟିଲା । ପ୍ରଥମେ ଯେଉଁ କଳାକାରମାନେ ତାଳଲୟ ବା ନିୟମ ଶୃଙ୍ଖଳାର ପରିସୀମାରୁ ବହୁ ଦୂରରେ ରହି ସ୍ୱତଃ ସ୍ଫୂର୍ତ୍ତି ଅଙ୍ଗ ଭଙ୍ଗିମା ସୃଷ୍ଟି କରୁଥିଲେ । କାଳକ୍ରମେ ତାହା ଶୃଙ୍ଖଳିତ ହେବାକୁ ଲାଗିଲା । ଯୁଗାନୁକ୍ରମେ ମନୁଷ୍ୟ ରୁଚିର ପରିବର୍ତ୍ତନ ଘଟୁଛି । ମନୁଷ୍ୟ ସଭ୍ୟତାର ତଥା ଜ୍ଞାନର ପରିସୀମା ବ୍ୟାପକ ହେଉଛି । ତେଣୁ ସଭ୍ୟତାର ବିକାଶ ସହିତ ଘୁମୁରା ନୃତ୍ୟର ରୂପରେଖରେ ମଧ୍ୟ କ୍ରମେ କ୍ରମେ ପରିବର୍ତ୍ତିତ ହୋଇ ଚାଲିଛି । ସାମାଜିକ ମନରେ ପରିବେଶଗତ ଅଭିଜ୍ଞତା ଯେତିକି ବଢ଼ିଛି, ପ୍ରକାଶ ପ୍ରଣାଳୀରେ ଏବଂ ରୀତିରେ ସେତିକି ପରିବର୍ତ୍ତନ ଦେଖାଦେଇଛି । ତେଣୁ ଯେଉଁ ନୃତ୍ୟ ପ୍ରଥମାବସ୍ଥାରେ ସ୍ୱତଃସ୍ଫୂର୍ତ୍ତିତାର ସ୍ୱଚ୍ଛନ୍ଦ ଦିଗନ୍ତରେ ବିଚରଣ କରୁଥିଲା, ତାହା କ୍ରମେ କ୍ରମେ ଶୃଙ୍ଖଳିତ ହେବାକୁ ଲାଗିଲା । ମନୁଷ୍ୟ ତାକୁ ନିଜ ରୁଚି ଅନୁକୂଳ କରିବା ନିମନ୍ତେ ତାର ଏକ ମାର୍ଜିତ ରୂପ ପରିକଳ୍ପନା କଲା । ଫଳରେ ନୃତ୍ୟ ସମୟରେ ସମସ୍ତ ନୃତ୍ୟକାରୀଙ୍କୁ ତାଳରଖି ନୃତ୍ୟଟିକୁ କିପରି ସରସ ସୁନ୍ଦର କରାଯାଇ ପାରିବ ସେଥିପ୍ରତି ଧ୍ୟାନ ଦେବାକୁ ପଡ଼ିଲା । ସେଥିପାଇଁ ସଂପ୍ରତି ଅନେକ ପ୍ରକାରର ନୃତ୍ୟ ଶୈଳୀ ଘୁମୁରାରେ ପ୍ରଚଳିତ । ଗାୟକ ବୋଲୁଥିବା ଗୀତର ରସାନୁଯାୟୀ କଳାକାରମାନେ କେତେବେଳେ ବଗ ଓ ବେଙ୍ଗ ସଦୃଶ ଡେଇଁ ଡେଇଁ କେତେବେଳେ ହୁଏତ ଇଂରାଜୀ ସଂଖ୍ୟା ଆଠର ଆକୃତିରେ ପରସ୍ପରକୁ ନୃତ୍ୟ ମାଧ୍ୟମରେ ଛନ୍ଦା ଛନ୍ଦି ହୋଇ, ଆଉ କେତେବେଳେ ବସି ପଞ୍ଚ ପୁଚି ଖେଳ ସଦୃଶ ଓ ଦଣ୍ଡାୟମାନରେ ଉତ୍‌କ୍ଷିପ୍ତ ପଦ ସଞ୍ଚାଳନ ପୂର୍ବକ ନୃତ୍ୟ ପ୍ରଦର୍ଶନ କରିଥାନ୍ତି । ଯେଉଁ ନର୍ତ୍ତନ ଶୈଳୀଗୁଡ଼ିକୁ ଏଠାକାର ଆଞ୍ଚଳିକ ଭାଷାରେ 'ବଗ୍‌ଡେଗା' 'ବେଙ୍ଗ୍ ନଚ୍' 'ଗାଏଛାନ୍ଦ୍' 'ନର୍‌ଧା' 'ବସା' ପ୍ରଭୃତି ନାମରେ

ଚର୍ଚ୍ଚିତ କରାଯାଇଥାଏ । ଏତଦ୍‌ଭିନ୍ନ ମଣ୍ଡଳାକାର; ଅର୍ଦ୍ଧଗୋଲାକାର ଶୃଙ୍ଖଳନୃତ୍ୟ ପ୍ରଭୃତି ବହୁବିଧ ନୃତ୍ୟଭଙ୍ଗୀ ଅଞ୍ଚଳାନୁକ୍ରମେ ପ୍ରଚଳିତ ଅଛି । ଛଉ ନୃତ୍ୟ ସହ ଘୁମୁରା ନୃତ୍ୟର ସାମଞ୍ଜସ୍ୟ ଖୁବ୍ ନିବିଡ । ଏ ଯେଉଁ ବରଗ୍ଡେଗା, ବେଙ୍ଗନଚ - ଏହାକୁ ଛଉନୃତ୍ୟରେ ଥିବା 'ବରହପକା' 'ବେଙ୍ଗଡ଼ିଆଁ' ପ୍ରଭୃତି ଉପଫଳ ନୃତ୍ୟ ସହ ତୁଳନା କରାଯାଇ ପାରେ । ଘୁମୁରା ନୃତ୍ୟ ସାଧାରଣତଃ ଏକ ବୀର ରସାତ୍ମକ ନୃତ୍ୟ । ଉଦ୍‌ଭ୍ରାନ୍ତ ପଦକ୍ଷେପ, ଆକସ୍ମିକ ଅଙ୍ଗ ସଞ୍ଚାଳନ ତଥା ବୀରତ୍ୱ ବ୍ୟଞ୍ଜକ ନେତ୍ର ବକ୍ର ର ବିବର୍ତ୍ତିତ୍ୱ ଏ ନୃତ୍ୟର ଏକ ମୁଖ୍ୟ ବୈଶିଷ୍ଟ୍ୟ । ତେଣୁ ନର୍ତ୍ତନ ଶୈଳୀ ଦୃଷ୍ଟିକୋଣରୁ ଏହାକୁ ମଣିପୁରୀ ନୃତ୍ୟ ତଥା ରାଜସ୍ଥାନର ଯୁଦ୍ଧ ନୃତ୍ୟ ଓ ପଞ୍ଜାବର ଗଣନୃତ୍ୟ 'ଭାଙ୍ଗଡ଼ା' ର ସମପର୍ଯ୍ୟାୟଭୁକ୍ତ କରାଯାଇପାରେ ।

**ଶାସ୍ତ୍ରୀୟତା** — ଲୋକନୃତ୍ୟ ଛଉ ଯେପରି ଅଧୁନା ଏକ ଶାସ୍ତ୍ରୀୟ ନୃତ୍ୟ ରୂପେ ମହତ୍ତ୍ୱପୂର୍ଣ୍ଣ ଆସନର ଅଧିକାରୀ ହୁଏ, ଅନୁରୂପେ ଘୁମୁରାରେ ମଧ୍ୟ ଶାସ୍ତ୍ରୀୟ ନୃତ୍ୟର ଅନେକ ଲକ୍ଷଣ ନିହିତ ଅଛି । ପ୍ରଥମତଃ ଏହାର ନୃତ୍ୟଭଙ୍ଗୀ ପ୍ରତି ଦୃଷ୍ଟି ଦେଲେ ଦେଖାଯାଏ ଯେ, କଳାକାରମାନେ ଗାୟକର ପ୍ରତ୍ୟେକ ପଦ ଶେଷରେ ଭିନ୍ନ ଭିନ୍ନ ପ୍ରକାରର ନୃତ୍ୟ ଭଙ୍ଗୀ ପ୍ରଦର୍ଶନ କରିଥାନ୍ତି । ସେମାନେ ନିଜ ମନ ମୁତାବକ ଯିଏ ଯେଉଁ ପ୍ରକାର ଭଙ୍ଗୀରେ ନୃତ୍ୟ କରି ପାରିବେ ନାହିଁ । ସେଥିପାଇଁ ସମସ୍ତ ନୃତ୍ୟକାରଙ୍କୁ ଶୃଙ୍ଖଳାବଦ୍ଧ ଭାବରେ ସମସ୍ତଙ୍କ ସହିତ ତାଳ ମିଶାଇ, ନୃତ୍ୟର ମାଧୁର୍ଯ୍ୟତା ପ୍ରତି ଦୃଷ୍ଟି ଦେଇ ନାଚିବାକୁ ପଡ଼ିବ । ଅନ୍ୟ ପକ୍ଷରେ ଗୀତ ଗୁଡ଼ିକର ରାଗ ଅନୁଯାୟୀ ନିଶାଣ ଓ ଢୋଲର ଲୟ ସ୍ଥିର କରାଯାଇଥାଏ । ଯେମିତି ନିପୁଣ; ଆଠତାଳ ଝୁଲା, ଦାଦରା ପ୍ରଭୃତି ନିଶାଣରେ ତାଳ ସହିତ ଆଶାବରୀ, ଚମ୍ପୁ, ତ୍ରୈଖି, ଭୈରବୀ, କାମଦ ପ୍ରଭୃତି ଗୀତର ବିଭିନ୍ନ ରାଗରାଗଣୀ ଘୁମୁରାରେ ରହିଛି । ଗୀତ ବୋଲିବାର ଭଙ୍ଗୀରୁହିଁ ବାଦକ ବା ନିଶାଣଧାରୀ, ଗାୟକ କେଉଁ ରାଗରେ ଗୀତ ବୋଲୁଛି ଏବଂ ସେଇ ରାଗରେ ଯେଉଁ ତାଳ ପ୍ରଯୁକ୍ତ ହେବ ସେଇ ତାଳ ହିଁ ବଜାଇଥାଏ । ଉପରୋକ୍ତ ପ୍ରତ୍ୟେକ ରାଗ ରାଗିଣୀ ପାଇଁ ନିଶାଣ ବଜାଇବାର ସ୍ୱତନ୍ତ୍ର ମାତ୍ରା ରହିଛି । ଯଦି ନିଶାଣ ବାଦକ କୌଣସି ଏକ ତାଳର ମାତ୍ରାକୁ ଉଲ୍ଲଂଘନକରି ଭୁଲ ପରିବେଷଣ କରେ ତେବେ ଝଞ୍ଜ [ତାଳ] ବାଦକ ଏବଂ ନୃତ୍ୟକାରୀଙ୍କ ପଦକ୍ଷେପ ସ୍ୱତଃ ଭୁଲ ହୋଇଯିବ ଓ ରସ ପରିବେଷଣରେ ବ୍ୟାଘାତ ଜନ୍ମିବ । ପ୍ରତ୍ୟେକ ରାଗର ସ୍ୱତନ୍ତ୍ର ନୃତ୍ୟ ଏବଂ ନିଶାଣର ସ୍ୱତନ୍ତ୍ର ଲୟ ବା ମାତ୍ରା ରହିଛି ଘୁମୁରା ଦଳମାନେ ଏ ସବୁକୁ ବହୁଦିନ ଧରି ଅଭ୍ୟାସ କରିଥାନ୍ତି ଏବଂ ଦର୍ଶକ ସମ୍ମୁଖରେ ପରିବେଷଣ କରନ୍ତି । ତେଣୁ ସଂପ୍ରତି ଘୁମୁରା ନୃତ୍ୟରେ ସ୍ୱତଃସ୍ଫୂର୍ତ୍ତିତାର ସ୍ୱରୂପ ପ୍ରକଟିତ ହୁଏ ନାହିଁ । ଯୁଗଯୁଗର ବ୍ୟବଧାନରେ ଆଜି ଆଉ ଏହାର ଆଦିମ, ଅକୃତ୍ରିମ ରୂପଟି ଅକ୍ଷତ ରହିପାରି ନାହିଁ । ଯେଉଁ ନୃତ୍ୟ ଆଦିବାସୀ ଜୀବନର ଭାବାବେଗରୁ ସୃଷ୍ଟି ଲାଭ କରିଥିଲା, ପରବର୍ତ୍ତୀ କାଳରେ ତାହା ଗ୍ରାମୀଣ ଜନତାର ସ୍ୱେହଧନ୍ୟ ହୋଇ ଶେଷରେ ବିଦଗ୍ଧ ଦର୍ଶକର ଦରବାରରେ ମଧ୍ୟ ସ୍ୱୀକୃତି ପାଇ ପାରିଲା । ତେଣୁ କଳାର ଏହି ରୂପରେ ଅରଣ୍ୟ, ଗ୍ରାମ୍ୟ ଏବଂ ନଗର ସଂସ୍କୃତିର ସମନ୍ୱୟ ଘଟିଛି ବୋଲି କହିବାକୁ ହେବ । ନୃତ୍ୟକାରୀମାନଙ୍କର ଶିରୋଭୂଷା ଟାହିଆ (ମୟୂର ଚନ୍ଦ୍ରିକା ନିର୍ମିତ) ବର୍ଣ୍ଣାଢ଼୍ୟ ବେଶ ପୋଷାକ ଏବଂ ଗୀତ ଓ ଅଭିନୟର ଶୈଳୀରେ ଅରଣ୍ୟ, ଗ୍ରାମ୍ୟ ଓ ନଗର ସଂସ୍କୃତିର ପ୍ରଭାବ ସୁସ୍ପଷ୍ଟ ।

ନାଟ୍ୟଶାସ୍ତ୍ରରେ ଅଭିନୟକୁ ଚାରୋଟି ବିଭାଗରେ ବିଭକ୍ତ କରାଯାଇଛି । ଯଥା - ଆଙ୍ଗିକ, ଆହାର୍ଯ୍ୟ, ବାଚିକ ଓ ସାତ୍ତ୍ୱିକ । ଅଭିନୟର ଏ ଚାରୋଟି ବିଭାଗ ମଧ୍ୟରୁ ସାତ୍ତ୍ୱିକାଭିନୟକୁ ବାଦ୍ ଦେଲେ ଅନ୍ୟ ତିନୋଟିର ସ୍ୱରୂପ ପୂର୍ଣ୍ଣ ଭାବେ ଘୁମୁରାରେ ଉପଲବ୍ଧ ହୁଏ । ଅଙ୍ଗଭଙ୍ଗୀ ଦ୍ୱାରା ଯେଉଁ ଅଭିନୟ ସଂପାଦନ କରାଯାଏ ତାହା ଆଙ୍ଗିକାଭିନୟ, ବାକ୍ ପଟୁତା ବା ବାକ୍ୟବିନ୍ୟାସ ଦ୍ୱାରା ଯେଉଁ ଅଭିନୟ କରାଯାଏ ତାହାକୁ ବାଚିକାଭିନୟ କୁହାଯାଏ । ସେହିପରି ବେଶଭୂଷାଦି ନିଷ୍ପାଦନର ନାମ ଆହାର୍ଯ୍ୟାଭିନୟ । କଳାହାଣ୍ଡି ମଦନପୁର-ରାମପୁର ଓ ଜୁନାଗଡ଼ ଅଞ୍ଚଳର କେତେକ ଖ୍ୟାତନାମଧନ୍ୟ ଘୁମୁରା ଦଳରେ ଆଙ୍ଗିକାଭିନୟ ଥିବାର ଲକ୍ଷ୍ୟ କରାଯାଏ । ଗାୟକ ବୋଲୁଥିବା ଗୀତର ଭାବାନୁସାରେ ନିଜ ହସ୍ତ, ପଦ, ଚକ୍ଷୁ ତଥା ମୁଖରେ ବିଭିନ୍ନ ବିଚ୍ଛିତ୍ତି ସୃଷ୍ଟି କରି ଗୀତର ଭାବକୁ ଦର୍ଶକ ମଧ୍ୟରେ ସଂକ୍ରାମିତ କରିବାକୁ ଚେଷ୍ଟା କରନ୍ତି । ଦୃଷ୍ଟାନ୍ତ ସ୍ୱରୂପ ଗାୟକ ଯେତେବେଳେ 'ତୋ ଲାଗି ଗୋପଦାଣ୍ଡ ମନାରେ କାଳିଆ ସୁଆ' ବୋଲି ଗୀତର ଲହରୀ ଛୁଟାନ୍ତି ସେତେବେଳେ କଳାକାରମାନଙ୍କ ମଧ୍ୟରୁ ଜଣେ କେହି କୃଷ୍ଣର ଭୂମିକାରେ ଅବତୀର୍ଣ୍ଣ ହୁଏ ଏବଂ ତାକୁ ମଧ୍ୟସ୍ଥଳରେ ରଖି ଅନ୍ୟାନ୍ୟ ଗୋପୀରୂପ ନୃତ୍ୟକାରୀ ବୃନ୍ଦ ମଣ୍ଡଳାକାରରେ କୃଷ୍ଣରୂପୀ ନୃତ୍ୟକାରୀକୁ ଘେରି ଯାନ୍ତି । ତତ୍‌ସଂଗେ ସଙ୍ଗେ ନିଜ ଅଙ୍ଗପ୍ରତ୍ୟଙ୍ଗର ସଂଚାଳନ ପୂର୍ବକ ଗୀତରଭାବକୁ ପ୍ରକଟନ କରନ୍ତି । ଏହାକୁ ନାଟ୍ୟଶାସ୍ତ୍ର ପ୍ରଦର୍ଶିତ ଆଙ୍ଗିକାଭିନୟର ପର୍ଯ୍ୟାୟଭୁକ୍ତ କରାଯାଇ ପାରିବ । ଏହାର ବାଚିକାଭିନୟ କିନ୍ତୁ ପରୋକ୍ଷରେ ଚାଲେ । ଘୁମୁରା ଏକ ଆୟାସ ସାଧ୍ୟ ନୃତ୍ୟ ହୋଇଥିବାରୁ ନର୍ତ୍ତକକୁ କୌଣସି ଗୀତ ବୋଲିବାକୁ ପଡେନାହିଁ । ନେପଥ୍ୟ ସଂଗୀତ ଦ୍ୱାରା ବାଚିକାଭିନୟ ପ୍ରଦର୍ଶନ କରାଯାଇଥାଏ । ଘୁମୁରାରେ ଅଧୁନା ନାନା ଅଙ୍ଗରାଗମାନ ବ୍ୟବହୃତ ହେଉଛି । କଳାକାରମାନେ ପୋଷାକ ନିମନ୍ତେ ମୂଲ୍ୟବାନ୍ ଭେଲ୍‌ଭେଟ୍ ସାର୍ଟିନ ସହିତ ଜରିଲଗା ବିଭିନ୍ନ ଆକର୍ଷଣୀୟ ଉପକରଣରେ ନିଜର ଶରୀରକୁ ସଜାଇଥାନ୍ତି । ଏଣୁ ନାଟ୍ୟଶାସ୍ତ୍ରର ନିୟମାନୁସାରେ ଏହାକୁ ଆହାର୍ଯ୍ୟାଭିନୟର ପର୍ଯ୍ୟାୟଭୁକ୍ତ କରାଯାଇ ପାରିବ ।

ନାଟ୍ୟଶାସ୍ତ୍ରରେ ତାଣ୍ଡବ ଓ ଲାସ୍ୟ ଉଭୟ ନୃତ୍ୟର ଉଲ୍ଲେଖ ଅଛି । ଘୁମୁରାରେ ତାଣ୍ଡବ ନୃତ୍ୟର ସ୍ୱରୂପ ଅନେକ କ୍ଷେତ୍ରରେ ନିଶାଣବାଦକ ନିକଟରେ ଦୃଷ୍ଟିଗୋଚର ହୁଏ । ସେହିପରି ତାଳପାଇଁ ନାଟ୍ୟଶାସ୍ତ୍ରରେ ତିନି ପ୍ରକାର ତାଳର ସୂଚନା ଦିଆଯାଇଛି । ସେଗୁଡ଼ିକ ହେଲା ମନ୍ଥର, ମଧ୍ୟମ ଓ ଦ୍ରୁତ । ଯେମିତି ଓ ନିପୁଣ ଦ୍ରୁତ ତାଳଯୁକ୍ତ ।

ଝୂଲ ତଥା ଆଷାଢ଼ ଶୁକ୍ଳ ପ୍ରଭୃତି ମନ୍ଥର ତାଳଯୁକ୍ତ । ଝୂଲ ଅର୍ଥ ଝୂଲି, ଝୂଲି, ଧୀରେ ଧୀରେ ମନ୍ଥର ତାଳରେ ନୃତ୍ୟ ପ୍ରଦର୍ଶନ କରାଯାଏ । ଆଠତାଳି ମଧ୍ୟମ ତାଳଯୁକ୍ତ ।

ନାଟ୍ୟଶାସ୍ତ୍ରରେ ନୃତ୍ତ, ନୃତ୍ୟ ଓ ନାଟ୍ୟ - ଏ ତିନୋଟିକଳାର ବୈଶିଷ୍ଟ୍ୟ ସମ୍ପର୍କରେ ଯାହା ବ୍ୟାଖ୍ୟା କରାଯାଇଛି ଘୁମୁରାରେ ସେ ସବୁର ଲକ୍ଷଣ ପୂର୍ଣ୍ଣ ଭାବେ ଅନୁସୃତ ହୁଏ । ନୃତ୍ତ, ନୃତ୍ୟ ଓ ନାଟ୍ୟ ମଧ୍ୟରେ ମୌଳିକ ପାର୍ଥକ୍ୟ ରହିଛି ଏବଂ ସେଗୁଡ଼ିକୁ ପୃଥକ ପୃଥକ ଭାବେ ଶିକ୍ଷା କରିବାକୁ ହୁଏ । ତାଳଲୟଯୁକ୍ତ ଗାତ୍ର ବିକ୍ଷେପକୁ 'ନୃତ୍ତ' ଏବଂ ଭାବାଶ୍ରୟୀ ପଦାର୍ଥାଭିନୟକୁ ନୃତ୍ୟ ବୋଲି କୁହାଯାଏ । ଯଥା.—

"ଅନ୍ୟଭାବାଶ୍ରୟଂ ନୃତ୍ୟମ୍, ନୃତ୍ତଂ ତାଳଲୟାଶ୍ରୟମ୍"

( ଧନଞ୍ଜୟ - ଦଶରୂପକମ୍ )

ମାତ୍ର ନାଟ୍ୟ ହେଉଛି ରସାଶ୍ରୟୀ ବାକ୍ୟାର୍ଥାଭିନୟ —

"ନାଟ୍ୟଶବ୍ଦୋ ରସେମୁଖ୍ୟୋ ରସାଭିବ୍ୟକ୍ତି କାରଣମ୍" ।

( ସଂଗୀତ ରତ୍ନାକର - ଶାର୍ଙ୍ଗଦେବ )

ବର୍ତ୍ତମାନ ବିଚାର କରାଯାଉ ଘୁମୁରାରେ ନୃତ୍ତରଧାରା କିପରି ଅନୁସୃତ ହୁଏ । ନୃତ୍ତ - ତାଳଲୟଯୁକ୍ତ ଗାତ୍ର ବିକ୍ଷେପ । ଏଥିରେ ଆଖି, ମୁଦ୍ରା, ହାତ ଆଦି ଭାବହୀନ ଅଙ୍ଗ ସଂଚାଳନ କେବଳ ସୌନ୍ଦର୍ଯ୍ୟ ବିଧାୟକ ରୂପେ ପରିଚିତ ।

ଘୁମୁରାରେ ନୃତ୍ତ ସୂଚନାମିଳେ ଯେତେବେଳେ ଯେତେବେଳେ ଆରମ୍ଭରେ 'ଉଠାଣି ବାଦ୍ୟ' ବଜାଇ କିଛିକ୍ଷଣ କଳାକାରମାନେ ଚମତ୍କାର ପଦ ବିକ୍ଷେପ ଦ୍ୱାରା ମୁହୂର୍ତ୍ତରେ 'ଚେଚେ ଚେଚେ' ଧ୍ୱନି କରି ବୃତ୍ତାକାରରେ କମ୍ପା ଧାଡ଼ିବାନ୍ଧି ଭାବବର୍ଜିତ ଅଙ୍ଗ ସଞ୍ଚାଳନ କରନ୍ତି, ଯାହାକୁ ଘୁମୁରାର 'ପୂର୍ବରଙ୍ଗ' ବୋଲି କୁହାଯାଇପାରେ । ଏହା ଦର୍ଶକମାନଙ୍କୁ କେବଳ ଆହ୍ୱାନ କରିବା ନିମନ୍ତେ କରାଯାଇଥାଏ । ପ୍ରାରମ୍ଭର ଏହି ସଂଗୀତହୀନ ତାଳଲୟ ଯୁକ୍ତ ବାଦ୍ୟ ଓ ଅଙ୍ଗଭଙ୍ଗୀର ପ୍ରଦର୍ଶନକୁ 'ନୃତ୍ତ'ର ପର୍ଯ୍ୟାୟଭୁକ୍ତ କରାଯାଇ ପାରିବ । ନୃତ୍ୟ ଭାବାଶ୍ରୟ ପଦାର୍ଥାଭିନୟୀ ବା ସଂଗୀତ ସମ୍ମିଶ୍ରିତ ଭାବମୟକଳା । ଘୁମୁରାର 'ପୂର୍ବ ରଙ୍ଗ' ପରେ ଗାୟକ ଗୀତ ବୋଲନ୍ତି ଏବଂ ଗୀତର ଭାବାନୁସାରେ ଅଙ୍ଗଭଂଗୀ ଓ ନିର୍ଦ୍ଦିଷ୍ଟ ପରିବେଶରେ ଶୈଳୀ ସ୍ୱୀକୃତ ହୁଏ, ତତ୍ସହିତ ପ୍ରତ୍ୟେକ ଗୀତ ଶେଷରେ ଭାବମୟ ଅଂଗଭଂଗୀ ପ୍ରଦର୍ଶନ କରାଯାଏ । ଏଣୁ ଏହା ଶାସ୍ତ୍ରୀୟମତର ନୃତ୍ୟ 'ନାଟ୍ୟ' ହେଉଛି ରସାଶ୍ରୟୀ ବାକ୍ୟାର୍ଥାଭିନୟ । ଅର୍ଥାତ୍ ଅଭିନୟଯୁକ୍ତ ରସାଶ୍ରୟୀ ଅଂଗୀଭଂଗୀକୁ ନାଟ୍ୟ କୁହାଯାଏ । ନୃତ୍ତ' ଓ ନୃତ୍ୟର ସମସ୍ତ ଲକ୍ଷଣ ନାଟ୍ୟରେ ନିହିତ ଘୁମୁରାରେ ଅଭିନୟ (ନାଟ୍ୟ)ର ସ୍ୱରୂପ କିପରି ରସଯୁକ୍ତ ହୋଇ ପ୍ରକଟିତ ହୋଇଥାଏ. ତାହା ଆଙ୍ଗିକାଭିନୟର ଆଲୋଚନା ପ୍ରସଂଗରେ କୁହାଯାଇଛି । ଏ ଦୃଷ୍ଟିରୁ ଘୁମୁରାରେ ନାଟ୍ୟରେ ବୈଶିଷ୍ଟ୍ୟ ମଧ୍ୟ ଉପଲବ୍ଧ ।

ତେବେ ସେ ଯାହା ହେଉ, ଏ ରୂପେ ବିଚାର କଲେ ଦେଖାଯିବ ଯେ ନାଟ୍ୟଶାସ୍ତ୍ର ପ୍ରଦର୍ଶିତ ନୃତ୍ୟର ଅନେକ ଶାସ୍ତ୍ରୀୟ ଲକ୍ଷଣ ଘୁମୁରାରେ ଅନୁସୃତ । ଯେହେତୁ ଏହାର କୌଣସି ନିର୍ଦ୍ଦିଷ୍ଟ ସାହିତ୍ୟ ନାହିଁ, ତେଣୁ ଏହାକୁ ଲୋକକଳାର ସମ୍ମାନ ଦିଆଯାଇ ପାରେ । ମାତ୍ର ଏହାର ପରିବେଷଣଶୈଳୀ ଓ ଅଭିନୟ ଆଦି ଦୃଷ୍ଟିରୁ ଏହାକୁ ଶାସ୍ତ୍ରୀୟତାର ସମ୍ମାନ ମଧ୍ୟ ଦିଆଯାଇ ପାରିବ । ଡଃ ହେମନ୍ତ କୁମାର ଦାସ ଘୁମୁରାକୁ ଏକ ଶାସ୍ତ୍ରୀୟ ନୃତ୍ୟର ମର୍ଯ୍ୟାଦା ଦିଅନ୍ତି । ଯଥା - "× × × ଦକ୍ଷିଣ ଓଡ଼ିଶାରେ ପାଲା, ଦାସକାଠିଆ, ଯାତ୍ରା, ଦେଶୀୟନାଟ: ଘୁମୁରାନାଚ, ଛଉନାଚ ଇତ୍ୟାଦି ଅନ୍ତର୍ଭୁକ୍ତ । ଏ ଗୁଡ଼ିକ ମୁଖ୍ୟତଃ ଶାସ୍ତ୍ରୀୟତାର ଭିତ୍ତି ଉପରେ ଦଣ୍ଡାୟମାନ ।" ( ଓଡ଼ିଆ ଲୋକନାଟକ, ପୃଷ୍ଠା-୧୬୩ )

**ସଂଗୀତ** — ଘୁମୁରାର ପରିସରକୁ ଶାସ୍ତ୍ରୀୟ ସଂଗୀତରେ ଧାରା ପ୍ରବେଶ କରିଛି ସ୍ୱର୍ଣ୍ଣଯୁଗ ସାହିତ୍ୟର ପରବର୍ତ୍ତୀ କାଳରେ । କାରଣ ସ୍ୱର୍ଣ୍ଣଯୁଗର ବିଶାଳ ଗ୍ରନ୍ଥ ସାହିତ୍ୟ ରାଗ-ରାଗିଣୀ ଯୁକ୍ତ ଓ ସ୍ୱର ଲାଳିତ୍ୟପୂର୍ଣ୍ଣ ହୋଇ ସାଂଗୀତିକତା ମାଧ୍ୟମରେ ଗଣ-ମୁଖୀ ହୋଇ ପାରିଥିଲା । ସେହି ସାହିତ୍ୟର ଅର୍ଥଚାତୁର୍ଯ୍ୟ ଜନ ସାଧାରଣଙ୍କ ନିକଟରେ ଦୁର୍ବୋଧ୍ୟ ଥିଲେ ହେଁ, ଭାଷାର ଲାଳିତ୍ୟ ଓ ସଂଗୀତିକ ମର୍ଯ୍ୟାଦା ଏ ଦେଶର ଜନଗଣଙ୍କୁ ମନ୍ତ୍ରମୁଗ୍ଧ କରିଥିଲା । ତେଣୁ ଘୁମୁରାରେ ମଧ୍ୟ ସ୍ୱର୍ଣ୍ଣଯୁଗୀୟ ସଂଗୀତର ଧାରା ଅନୁସୃତ ହୁଏ । ଗାୟକମାନେ ବିଭିନ୍ନ ଗ୍ରନ୍ଥ, ଚଉପଦୀ ଓ ଓଡ଼ିଶୀ ସଂଗୀତର ଆଂଗିକ ଓ ଆତ୍ମିକ ବିଭବକୁ ଗ୍ରହଣ କରି, ଘୁମୁରା ନୃତ୍ୟ ମାଧ୍ୟମରେ ଏହି ଅଞ୍ଚଳର ଅଗଣିତ ନିରକ୍ଷର ଜନତାଙ୍କ ନିକଟରେ ସ୍ୱର୍ଣ୍ଣଯୁଗୀୟ ସଂଗୀତର ଧାରାକୁ ପରିବେଷଣ କରିଥାନ୍ତି ଏବଂ ତତ୍ସଂଗେ ସେମାନଙ୍କ ଆଧ୍ୟାତ୍ମିକତା ତଥା ରସଚେତନାକୁ ଉଦ୍‌ବୁଦ୍ଧ କରିବାରେ ସମର୍ଥ ହୁଅନ୍ତି । ଏତଦ୍‌ଭିନ୍ନ ଏ ଅଞ୍ଚଳସ୍ଥ କବିଗଣଙ୍କର ବିଭିନ୍ନ ଗ୍ରନ୍ଥ ଚଉପଦୀ ମଧ୍ୟ ଘୁମୁରାରେ ବୋଲାଯାଉଛି । ଯଥା —ରଘୁମଣି ବଣ୍ଡାଲ, ଦୁର୍ଗାମାଧବ ସିଂହଦେଓ, ଚନ୍ଦ୍ରାମଣି ସିଂହଦେଓ, ପଦ୍ମନ ସିଂହଦେଓ, ଉଦିତ ପ୍ରତାପ ଦେବ, ରାମଚନ୍ଦ୍ର ରାଏଗୁରୁ, ବୀରବିକ୍ରମ ଦେବ ମନୋହର ମେହେର ପ୍ରମୁଖ ଅନେକ ପରିଚିତ ସାହିତ୍ୟ ସାଧକଙ୍କ ରଚିତ ଗୀତମାନ ଏ ନୃତ୍ୟର ସାଂଗୀତିକ ମୂଲ୍ୟବୋଧକୁ ପ୍ରତିଷ୍ଠିତ କରିପାରିଛି । ଅନେକ ସମୟରେ ରାମାୟଣ ମହାଭାରତର ସଂକ୍ଷିପ୍ତ ତଥା ସ୍ଥାନୀୟ କବିମାନଙ୍କ ଦ୍ୱାରା ରଚିତ ଆଖ୍ୟାନ ଉପାଖ୍ୟାନ ମାନ ଘୁମୁରାରେ ବର୍ଣ୍ଣନା କରାଯାଇଥାଏ । ସେଇବେଳେ କଳାକାରମାନଙ୍କଠାରେ ବିଷୟ ଭିତ୍ତିକ ନାଟ୍ୟଧର୍ମ ପ୍ରକାଶିତ ହୁଏ ।

'ବାଦୀ ଘୁମୁରା'ର ଗୀତଗୁଡ଼ିକ ଆଂଗିକ ଓ ଆତ୍ମିକ ଦୃଷ୍ଟିକୋଣରୁ ଭିନ୍ନ ଧରଣର । ଏନୃତ୍ୟର ବାଦୀ ଦୁଇ ପ୍ରକାରର । ଯଥା — 'ଛଲବାଦୀ ଓ 'କବି ବାଦୀ'। 'ଛଲବାଦୀ'ରେ ଜଣେ ଗାୟକ ଗୀତ ମାଧ୍ୟମରେ ଅନ୍ୟ ଏକ ଘୁମୁରା ଦଳର ଗାୟକଙ୍କୁ ସ୍ତ୍ରୀଲିଂଗରେ ସମ୍ବୋଧନ କରି ପୁରାଣଶାସ୍ତ୍ର ତଥା ଶରୀର ତତ୍ତ୍ୱ ଉପରେ ଆଧାରିତ କୌଣସି ଗୋଟାଏ ପ୍ରଶ୍ନ ପଚାରନ୍ତି

ଏବଂ ଅନ୍ୟ ଜଣେ ତାହାର ପ୍ରତ୍ୟୁତ୍ତର ଦିଅନ୍ତି । ତେଣୁ ଏହାକୁ 'ପଦ୍ୟର-ଉତ୍ତର' ବୋଲି ମଧ୍ୟ କୁହାଯାଇଥାଏ । 'ଛଲିବାଦୀ'ର ଏକ ଦୃଷ୍ଟାନ୍ତ —

ପ୍ରଶ୍ନ — ସାରଂଗଧରଗୋସାଇଁ, କହ ସାରଂଗ ପଦ୍ୟର ଗୁଣ ।। ଘୋଷା ।।
ସାରଂଗର ସୁତ, ତା' ଅରିର କାନ୍ତ
କାହା ବକ୍ଷେ ଛନ୍ତି ନିବାସ କରି
କେଉଁ ପୁଷ୍ପେ ଅଂଗେଡ଼ା, ହୁଅନ୍ତି ଭୂଷଣ
ଚର୍ଚ୍ଚୀ ତାହାଙ୍କର କେଉଁ ସୁନ୍ଦରରେ ।। ୧ ।।

ଉତ୍ତର :— ସାରଂଗ ଧ୍ୱଜକାନ୍ତି, ଶୁଣ ସାରଂଗର ପଦ୍ୟୋତ୍ତରରେ
।। ଘୋ ।।

ସାରଂଗରସୁତ ତା' ଅରିର କାନ୍ତ
ଗିରି ବକ୍ଷେ ଛନ୍ତି ନିବାସ କରି
ପୁଷ୍ପ ପାରିଜାତ ହୁଅନ୍ତି ଭୂଷିତ
ସତଦେବ ଅଟେ ତାହାଙ୍କ ନାରୀ ସେ ।
( ନବଘନ ସାହୁ, ମଙ୍ଗଳାଶିବନ୍ଧ )

କିନ୍ତୁ 'କଳିବାଦୀ'ରେ ଗାୟକମାନେ ନିଜ ନିଜ ପ୍ରୌଢ଼ି ଦେଖାଇବା ପାଇଁ ବିପକ୍ଷଦଳର ଗାୟକଙ୍କୁ କଟୁ ତଥା ଉତ୍ତେଜନାମୂଳକ ଭାଷାରେ ଭର୍ତ୍ସନା କରିଥାନ୍ତି । ଯଥା :—

୧ - ଆରେ ପାପିଷ୍ଠଛାର, ଆଜ ସମ୍ମୁଖେ ପଡ଼ିଛୁ ମୋରରେ । ଘୋଷା ।
କାଳ ସର୍ପ ମୁଖେ ଅଂଗୁଳି ଭୁ ଦେଲୁ
ଜମଦାଢେ ହେଲୁ କର, ମାରିବ ହାବୋଡ଼ା କରି
ଦେଖ, ମଧ୍ୟାଚୂର୍ଣ୍ଣ ହେବ ତୋର ରେ ।। ୧ ।।
[ ଚନ୍ଦ୍ରମଣି ସିଂହଦେଓ, ମ : ରାମପୁର ]

୨ - ଆରେ ଅଧୂଆ କଂସା
ପଶାଖେଳ କାହୁଁ ଜାଣେ ଶଶାରେ ।। ଘୋଷା ।।
ପଲ୍ଲୀରେ ତୋ ନିତ ବସାରେ
ରାଜ ଦ୍ୱାରେ କି ସାହସା ?
ଦରପୋଡ଼ା ମୁଖେ ଲଜ ନାହିଁ ତୋର,
ଦେଉରୁ ମୁରୁକ ହସାରେ ।। ୧ ।।
( ମନୁରାଉତ, ମ : ରାମପୁର )

ମୋଟ ମୋଟି ଭାବରେ ଘୁମୁରାରେ ଗ୍ରନ୍ଦ, ଚଣ୍ଢୀଦାସୀ, ଛଲିବାଦୀ, କଳିବାଦୀ, ମାଳଶ୍ରୀ ତଥା ପୁରାଣୋକ୍ତର ଆଖ୍ୟାନ ଉପାଖ୍ୟାନ ମୂଳକ ଗୀତର ସ୍ୱରୂପ ସହିତ 'ଦକ୍ଷିଣିଆ' ନାମରେ ଏକ ସଂଗୀତ ଶୈଳୀ ପ୍ରଚଳିତ ଅଛି । ଯଥା —

"ତରୁଣ ନବୀନା ଗୋରି, ଗୁଣକେ ଗୁଣ ମୋହରି
ବିଦେଶୁ ଅଇଲ ଫେରି, ଗୁଣ ଦୁଣେ ଆଠ ଧରି ।। ଘୋଷା ।।
ଗୁଣ ଘରକ ଯେ ବାର, ଦେଇ ଆଲିଙ୍ଗନ କରି
ଗୁଣ ଚଉକୁ ଷୋହଳ, ନିବାରଣ କର ଗୋସାଇଁ ।। ୧ ।।
( ଧନେଶ୍ୱର ସାହୁ, ମ. ରାମପୁର )

ସଂପ୍ରତି ଆଦିବାସୀ ନୃତ୍ୟ ତାଂପରେ ଯେପରି ସ୍ୱଭାବର ସ୍ୱତଃସ୍ଫୂର୍ତ୍ତି ସଂଗୀତ ବୋଲାଯାଉଛି, ଠିକ୍ ସେହିପରି ଘୁମୁରାରେ ମଧ୍ୟ ସୃଷ୍ଟିର ଆଦି ପର୍ଯ୍ୟାୟରେ ସ୍ୱତଃସ୍ଫୂର୍ତ୍ତି ସଂଗୀତର ସମାବେଶ ଘଟିଥିଲା ।

ଏକଦା ଘୁମୁରା ନୃତ୍ୟ ସମଗ୍ର ଓଡ଼ିଶାର ଏକ ଜନପ୍ରିୟ ଲୋକନୃତ୍ୟ ରୂପେ ପ୍ରଚଳିତ ଥିଲା । କୋଣାର୍କ ମନ୍ଦିରର ପ୍ରସ୍ତର ଗାତ୍ରରେ ଘୁମୁରା ନର୍ତ୍ତକର ଏକ ଭଂଗୀ ଖୋଦିତ ହୋଇ ରହିଛି । ଏ କଥା ଶ୍ରୀ ଧୀରେନ୍ଦ୍ର ନାଥ ପଟ୍ଟନାୟକ ତାଙ୍କର 'ଓଡ଼ିଶୀ ନୃତ୍ୟ' ପୁସ୍ତକରେ ସ୍ୱୀକାର କରିଛନ୍ତି । "କୋଣାର୍କର କେବଳ ଗୋଟିଏ ସ୍ଥାନରେ ଘୁମୁରା ବଜାଇ ଜଣେ ଲୋକ ନୃତ୍ୟ କରୁଥିବାର ଦୃଶ୍ୟ ଦେଖାଯାଏ ।" ( ପୃଷ୍ଠା ୭୯ ) ଶ୍ରୀ ପଟ୍ଟନାୟକ ତାହାର ଏକ ଫଟୋ ଚିତ୍ର ମଧ୍ୟ ସେଇ ପୁସ୍ତକରେ ପ୍ରଦାନ କରିଛନ୍ତି । ଅନ୍ୟ କେତେକ ସମାଲୋଚକ ଭୁବନେଶ୍ୱର ଭୀମେଶ୍ୱର ମନ୍ଦିରରେ ମଧ୍ୟ ଘୁମୁରା ନୃତ୍ୟର ଭଂଗୀ ଖୋଦିତ ହୋଇଛି ବୋଲି ମତ ଦେଇଥାନ୍ତି । ଏଥିରୁ ବୁଝାପଡ଼ୁଛି ଯେ, ପ୍ରାଚୀନ କାଳରେ ନିଶ୍ଚିତ ଭାବେ ସମଗ୍ର ଓଡ଼ିଶାର କଳାକ୍ଷେତ୍ରରେ ଏହି ନୃତ୍ୟର ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଥିଲା, ନଚେତ୍ କୋଣାର୍କ ଭଳି ବିଶ୍ୱ ପ୍ରସିଦ୍ଧ ମନ୍ଦିରର ଗାତ୍ରରେ ଏହା ସ୍ଥାନ ପାଇ ପାରି ନ ଥାନ୍ତା । ଅପର ପକ୍ଷରେ ସାରଳା ମହାଭାରତ, ଦାଣ୍ଡି ରାମାୟଣ, ଚଣ୍ଡୀ-ପୁରାଣ ପ୍ରଭୃତି ଗ୍ରନ୍ଥମାନଙ୍କରେ ଘୁମୁରାକୁ ଏକ ଯୁଦ୍ଧକାଳୀନ ବାଦ୍ୟରୂପେ ଚର୍ଚ୍ଚିତ କରାଯାଇଛି । ଅଧିକନ୍ତୁ ସାରଳା ଦାସ ତଥା ବଳରାମ ଦାସ ପ୍ରମୁଖ ପୁରାଣକାରମାନେ ହେଉଛନ୍ତି ପୂର୍ବ ଓଡ଼ିଶାର ବ୍ୟକ୍ତି । ସୁତରାଂ ପୁରାତନ କାଳରେ ପୂର୍ବ ଓଡ଼ିଶାରେ ମଧ୍ୟ ଏ ନୃତ୍ୟର ସ୍ଥିତି ଥିଲା ଏବଂ ଉକ୍ତ ପୁରାଣକାରମାନେ ନିଶ୍ଚିତ ଭାବେ ସ୍ୱଚକ୍ଷୁରେ ଏହାକୁ ଉପଲବ୍ଧ କରିଥିଲେ । ସେଥିପାଇଁ ସେମାନଙ୍କର ପୁରାଣ ଗ୍ରନ୍ଥଗୁଡ଼ିକରେ ଏହାର ବର୍ଣ୍ଣନ ସ୍ଥାନ ପାଇପାରିଛି । ପ୍ରାଚୀନ କାଳରେ ଘୁମୁରା ଯେ କେବଳ ଦକ୍ଷିଣ କୋଶଳର ଏକ ଜନପ୍ରିୟ ବାଦ୍ୟ ଥିଲା ତାହା ନୁହେଁ — ବରଂ ଏହା ସମଗ୍ର ଓଡ଼ିଶାର ଏକ ଆଦରଣୀୟ ଲୋକ ନୃତ୍ୟ ରୂପେ ନିଜର ସ୍ଥିତିକୁ ବଜାୟ ରଖିଥିଲା । ସଂପ୍ରତି କେବଳ କଳାହାଣ୍ଡିରେ ତଥା ପଶ୍ଚିମ ଓଡ଼ିଶାର କେତେକ ଅଞ୍ଚଳରେ ହିଁ ଏ ନୃତ୍ୟର ଏକ ସ୍ୱତନ୍ତ୍ର ଭିତ୍ତି ରହିଛି । ଏହାର ମୂଳରେ ଦୁଇଟି କାରଣ ନିହିତ । ପ୍ରଥମତଃ ଏ ଅଞ୍ଚଳରେ ଓଡ଼ିଶାର ଅନ୍ୟାନ୍ୟ ଜିଲ୍ଲାମାନଙ୍କ ଅପେକ୍ଷା ଅଧିକ ସଂଖ୍ୟାରେ ଆଦିବାସୀମାନେ ବସବାସ କରନ୍ତି ।

ଦ୍ୱିତୀୟତଃ ଏ ନୃତ୍ୟ ସ୍ଥାନୀୟ ରାଜାମାନଙ୍କର ପୃଷ୍ଠପୋଷକତା ଲାଭ କରିଥିବାରୁ ଏଯାବତ୍ ଏହା ଉକ୍ତ ଅଞ୍ଚଳରୁ ବିସ୍ମୃତ ହୋଇନାହିଁ ।

ଶକ୍ତି ଉପାସନା ସହ ଘୁମୁରାର ସଂଯୁକ୍ତିକୁ କୌଣସି ମତେ ଏଡ଼ାଇ ଦିଆଯାଇ ନ ପାରେ । ଏ ଅଞ୍ଚଳର ବୟୋବୃଦ୍ଧ ମାନଙ୍କଠାରୁ ଶୁଣାଯାଏ ଯେ, ପୁରାତନ କାଳରେ ଦଶହରା ପର୍ବର ଉପାସନା ବେଳେ ହିଁ ଘୁମୁରା ପରିବେଷଣ କରାଯାଉ ଥିଲା । କିନ୍ତୁ ଏବେ ପୁଷପୂର୍ଣ୍ଣିମା, ନୂଆଖାଇ ଓ ବିବାହାଦି ଉତ୍ସବ ବେଳେ ମଧ୍ୟ ଏ ନୃତ୍ୟର ଆୟୋଜନ କରାଯାଉଛି ।

ଗୋଟିଏ ଗୋଟିଏ ଘୁମୁରା ଦଳରେ ଆଠରୁ ଦଶଜଣ ଭିତରେ କଳାକାର ଥାନ୍ତି । ଆଉ କେତେକ ଦଳରେ 'ଝହଲିଆ' ନାମରେ ଏକ କଳାକାର ଥାଏ । ଚର୍ଚ୍ଚିତ ବେଶରେ ସଜ୍ଜିତ ହୋଇ ହସ୍ତ ଦ୍ୱୟରେ ମୟୂର ପୁଚ୍ଛର ଗୁଚ୍ଛ ଧାରଣ କରି ନୃତ୍ୟଦଳର ସମ୍ମୁଖ ଭାଗରେ ସେ ନୃତ୍ୟ ପ୍ରଦର୍ଶନ କରେ । 'ଝହଲିଆ' ଏଠାରେ ନୃତ୍ୟ ନିର୍ଦ୍ଦେଶକ । ସେ ଯେଉଁ ପ୍ରକାର ଅଙ୍ଗଭଙ୍ଗୀ ପ୍ରଦର୍ଶନ କରିବ, ଅନ୍ୟମାନେ ତାକୁ ଅନୁସରଣ କରି ତଦାନୁରୂପ ଅଙ୍ଗ ସଂଚାଳନ କରିବେ । ମୁଣ୍ଡରେ ପାଗ ଏବଂ ମୟୂରପୁଚ୍ଛର ଶିରସ୍ତ୍ରାଣ ସହିତ ପାଇକଚ୍ଛା ମାରି- ପଦରେ ଘୁଙ୍ଗୁର ଓ ବାହୁରେ ମୟୂର ଚନ୍ଦ୍ରିକାର ବାହୁଟି ପିନ୍ଧିବା ହେଉଛି ଘୁମୁରାର ମୌଳିକ ବେଶସଜ୍ଜା । ଏଠାରେ ଲକ୍ଷଣୀୟ ଯେ, ଘୁମୁରା ବାଦକମାନେ ମୁଣ୍ଡରେ ଯେଉଁ ମୟୂର ପୁଚ୍ଛର ଟାହିଆ ଖୋସିଥାନ୍ତି, ତାହା ହେଉଛି ଶବର ସଂସ୍କୃତିର ପ୍ରଭାବ । କାରଣ ଏବେ ମଧ୍ୟ ପଶ୍ଚିମ ଓଡ଼ିଶାର 'ଭଞ୍ଜା ଶବର ନାମରେ ଏକ ଶବର ଜାତି ଅର୍ଦ୍ଧ ଉଲଗ୍ନାବସ୍ଥାରେ ମୁଣ୍ଡରେ ବିଭିନ୍ନ ପକ୍ଷୀଙ୍କ ପରରେ ତିଆରି ଠିକ୍ ଟାହିଆ ସଦୃଶ ଏକ ଶିରସ୍ତ୍ରାଣ ପିନ୍ଧି, ଘୁଡୁକା ବଜାଇ ତଥା ମାଟିରେ ମୁଣ୍ଡପୋତି ଭିକ୍ଷା ମାଗିବୁଲେ ଯାହାକୁ ଏଠାକାର ଭାଷାରେ 'ମୁଣ୍ଡରୁଫୁ' ବୋଲି କହିଥାନ୍ତି । ତେଣୁ ଏହା ନିଶ୍ଚିତ ଯେ, ଘୁମୁରାର ଶିରସ୍ତ୍ରାଣ ଟାହିଆ ଶବର ସଂସ୍କୃତିର ପ୍ରଭାବ ସ୍ୱରୂପ । ଏହି ନୃତ୍ୟରେ ପାଞ୍ଚ ପ୍ରକାରର ବାଦ୍ୟ ବାଜେ । ଯଥା — ନିଶାଣ, ଝାଂଜ, ମହୁରି, ଢୋଲକ ବା ମର୍ଦ୍ଦଳ ଓ ଘୁମୁରା ଯାହାକୁ କେରଳର 'କୁଟିୟାଟ୍ଟନ୍' ଲୋକନାଟ୍ୟର 'ପଞ୍ଚବାଦ୍ୟ' ପଦ୍ଧତି ସହ ତୁଳନା କରାଯାଇ ପାରେ । ପାଞ୍ଚ ପ୍ରକାର ବାଦ୍ୟ ମଧ୍ୟରୁ ଘୁମୁରାର ନାମାନୁସାରେ ଏହି ନୃତ୍ୟକୁ ଘୁମୁରା ନୃତ୍ୟ କୁହାଯାଉ- ଥିଲେ ହେଁ, ନିଶାଣ ହେଉଛି ଏ ନୃତ୍ୟର ମୁଖ୍ୟ ବା Leading କୌଣସି ଏକ କଳାର ବର୍ଣ୍ଣାଢ୍ୟ ରୂପ ନିର୍ଦ୍ଦିଷ୍ଟ ଗୋଷ୍ଠୀ ବା ଜାତିର ନିୟନ୍ତ୍ରଣାଧୀନ ହୋଇ ରହେ ନାହିଁ । ତେଣୁ ଘୁମୁରା ଏକ ଆଦିବାସୀ ନୃତ୍ୟ ହୋଇ ଥିଲେ ହେଁ, ଅଧୁନା ଏହା ନିର୍ଦ୍ଦିଷ୍ଟ ସଂପ୍ରଦାୟର କଳାତ୍ମକ ବିଭାଗ ରୂପେ ନ ରହି ଅନ୍ୟ ସଂପ୍ରଦାୟରେ ମଧ୍ୟ ଉକ୍ତ ନୃତ୍ୟର ପ୍ରଚଳନ ପରିଦୃଷ୍ଟ ହୁଏ ।

ତେବେ ସେ ଯାହାହେଉ, ଏ ରୂପେ ବିଚାର କଲେ ଘୁମୁରାର ଅନ୍ତରାଳରେ ଲୁକ୍କାୟିତ ଥିବା ବହୁ ରହସ୍ୟମୟ ତଥ୍ୟର ଉଦ୍‌ଘାଟନ କରାଯାଇ ପାରିବ, ଯାହାକି ସୁଦୀର୍ଘ ଅତୀତର ଏକ ମହତ୍ତ୍ୱପୂର୍ଣ୍ଣ ସଂସ୍କୃତିକ ଐତିହ୍ୟର ବାର୍ତ୍ତା ଉନ୍ମୋଚନ କରେ । ସଂପ୍ରତି ଏ ନୃତ୍ୟ ସ୍ୱତଃସ୍ଫୁର୍ତ୍ତିକୁ ହରାଇ ବସି ଗୀତ ନୃତ୍ୟ ଓ ଅଭିନୟ ଏ ତିନୋଟିର ମଧୁର ସମାବେଶ ଯୋଗୁ ତଥା ରସାନୁସାରୀ ଶାସ୍ତ୍ରୀୟ ରାଗ ରାଗିଣୀ ଓ ଭାବାନୁଯାୟୀ କଳାତ୍ମକ ନୃତ୍ୟ ପାଇଁ ଏହା ଏକ ବିଶେଷ ଗମ୍ଭୀର ସୁସଂସ୍କୃତ ରୂପ ପରିଗ୍ରହଧାରଣ କରିଛି । ତେଣୁ ଏହାକୁ ଯୁକ୍ତିସହକାରେ ପ୍ରେରଣ ନୃତ୍ୟ ବୋଲି କୁହାଯାଇପାରେ । ଲୋକନାଟ୍ୟରେ 'ନାଟ୍ୟ ଗୀତ' ନାମକ ଏକ ଧାରା ଅଛି ଏବଂ ତାହା ଦୁଇ ଭାଗରେ ବିଭକ୍ତ (i) ପାଳିନୃତ୍ୟ ଓ (ii) ପ୍ରେରଣ ନୃତ୍ୟ । ପାଳାଭିନୟ ଅର୍ଥାତ୍ ପାଳିପାତ୍ରୀମାନେ ମୁହଁରେ ମୁଖାପିନ୍ଧି ଅଭିନୟ ପ୍ରଦର୍ଶନ କରନ୍ତି । କିନ୍ତୁ ପ୍ରେରଣା ନୃତ୍ୟରେ ସଂଳାପ ସଂଗୀତମୟ ହୁଏ ବା ସଂଗୀତ ସହ ନୃତ୍ୟ ଓ ଅଭିନୟ ମଧ୍ୟ ପ୍ରଦର୍ଶିତ ହୁଏ । ଏ ନୃତ୍ୟର କଳାକାରମାନେ ନେପଥ୍ୟ ବିଧାନ ପୂର୍ବକ ଅଂଶଗ୍ରହଣ କରନ୍ତି । ଏ ଦୃଷ୍ଟିରେ ଘୁମୁରାକୁ ପ୍ରେରଣ ନୃତ୍ୟର ଅନ୍ତର୍ଭୁକ୍ତ କରାଯାଇ ପାରିବ । ଏସିଆଡ଼ ୧୯୮୨ ପାଇଁ ଦିଲ୍ଲୀ ଯାଇ ଏ ନୃତ୍ୟ ଅନ୍ତର୍ଜାତିକ କ୍ଷେତ୍ରରେ ନିଜର ଖ୍ୟାତିକୁ ପ୍ରତିଷ୍ଠିତ କରିପାରିଛି ।

ର : ରାମପୁର, କଳାହାଣ୍ଡି

# କଳାହାଣ୍ଡି ଜିଲ୍ଲାରେ ପିଲାବିକ୍ରି ?

ପ୍ରୟାଗଦତ୍ତ ଜୋଶୀ



ଭାଷାଗତ ଚେତନା ସାଂସ୍କୃତିକ ଚେତନାର ଏକ ବିଶିଷ୍ଟ ଅଙ୍ଗ-ଏହା ଅନସ୍ଵୀକାର୍ଯ୍ୟ । କୋଶଲୀ ଭାଷାକୁ ଏକ ସ୍ଵତନ୍ତ୍ର ଭାଷାର ସ୍ଵୀକୃତି ନ ମିଳିବା ପର୍ଯ୍ୟନ୍ତ କବିରାଜ ପ୍ରୟାଗଦତ୍ତ ଜୋଶୀଙ୍କ ଲେଖନୀର ବିସ୍ତାର ନାହିଁ । ଏହାକୁ ଓଡ଼ିଆ ଭାଷାର ଉପଭାଷା ବୋଲି କହୁଥିବା ବିଜ୍ଞମାନଙ୍କ ସହ ସେ ଏକମତ ନୁହଁନ୍ତି । କୋଶଲୀକୁ ସ୍ଵତନ୍ତ୍ର ଭାଷାର ଦର୍ଜା ନ ଦେବା ମୂଳରେ କେତେକ ନ୍ୟସ୍ତ ସ୍ଵାର୍ଥ ଗୋଷ୍ଠୀର ଚକ୍ରାନ୍ତ ରହିଛି ବୋଲି ତାଙ୍କର ଦୃଢ଼ ବିଶ୍ଵାସ । ସମ୍ବଲପୁର ବିଶ୍ଵ ବିଦ୍ୟାଳୟର ମୁଖପତ୍ର 'ସପ୍ତର୍ଷି' ରେ ୧୯୮୨ରୁ ୧୯୯୦ ପର୍ଯ୍ୟନ୍ତ ଏ ସଂଖ୍ୟାସ୍ତ ତାଙ୍କର ଅନେକ ପ୍ରବନ୍ଧ ପ୍ରକାଶିତ ।

ଏହି ପ୍ରବନ୍ଧରେ କଳାହାଣ୍ଡିରେ ପିଲାବିକ୍ରି ଘଟଣାର ସାମାଜିକ ପୃଷ୍ଠଭୂମି ସମ୍ପର୍କରେ ସେ ଆଲୋକପାତ କରିଛନ୍ତି । ଖଡ଼ିଆଳ-ନୂଆପଡ଼ା ଅଞ୍ଚଳ ସହ ଓତଃ ପ୍ରୋତଃ ଭାବେ ଜଡ଼ିତ କବିରାଜ ଜୋଶୀଙ୍କ ନିଜସ୍ଵ ଅନୁଭୂତି ସମ୍ପନ୍ନ ଏହି ଲେଖା ପାଠ କଲାପରେ ରାଜନୈତିକ ନେତୃବର୍ଗ ଓ ଗଣମାଧ୍ୟମରେ ବଡ଼ ପଣ୍ଡାଙ୍କର ପ୍ରକୃତ ସ୍ଵରୂପ ପାଠକଗଣ ନିଶ୍ଚିତ ରୂପେ ଉପଲବ୍ଧି କରିପାରିବେ ।

କଳାହାଣ୍ଡି ଜିଲ୍ଲାରେ ୧୯୮୫ର ଉତ୍କଟ ଦୁର୍ଭିକ୍ଷ ସମୟରେ ଖଡ଼ିଆଳ ସନ୍ନିକଟ ଅମଲପାଲି ଗ୍ରାମର ପିଲାବିକ୍ରି ଘଟଣାକୁ ନେଇ ସାରା ଭାରତର ବାତାବରଣ କୋଳାହଳମୟ ହୋଇଥିଲା । ଓଡ଼ିଶାର ଖବରକାଗଜ ମହଲରେ ହୁଲସ୍ଥୂଲ ଲାଗିଥିଲା ଓ ବିଧାନସଭା ମଧ୍ୟ ଆଲୋଚନା ପ୍ରତ୍ୟାଲୋଚନାରେ ମୁଖରିତ ହୋଇଥିଲା । ଏ ସବୁ ସତ୍ତ୍ଵେ ତାର କୌଣସି ପ୍ରତିକାର ହୋଇପାରି ନାହିଁ ଓ ଜିଲ୍ଲାରେ ଏବେ ବି ପିଲାବିକ୍ରିର ସମାଚାରମାନ ପ୍ରକାଶିତ ହେଉଛି । ଏ ତଥାକଥିତ ପ୍ରଥା ବା ଚଳଣୀର ମୂଳକାରଣ ଦାରିଦ୍ର୍ୟ ହେଲେ ହେଁ ତାର ସାମାଜିକ ଅଧ୍ୟୟନ ଓ ବିବିଧ ରୂପର ବିବରଣୀ ବର୍ତ୍ତମାନ ସୁଦ୍ଧା ବାହାର ଲୋକଙ୍କଗୋଚର ହୋଇପାରିନାହିଁ । ଏ ଲେଖାରେ ତାର ଚେଷ୍ଟା କରାଯାଉଛି ।

ଭଗବାନଙ୍କ ସର୍ବଶ୍ରେଷ୍ଠ ସୃଷ୍ଟି ମନୁଷ୍ୟ ଯେତେ ଶିକ୍ଷିତ ଓ ସଭ୍ୟ ହେଲେ ହେଁ ସାଧାରଣ ପ୍ରାଣୀଧର୍ମ ବା ପଶୁପ୍ରବୃତ୍ତି ଯେ ତା ଭିତରେ ବଳିଷ୍ଠ ଏହା ଅବିସମ୍ବାଦିତ । ଶାସ୍ତ୍ରୀୟ ଭାଷାରେ ଏହାକୁ 'ମତ୍ସ୍ୟନ୍ୟାୟ' କହନ୍ତି । ମାଛ ସବୁ ମାଂସ ତ ଖାଏ ହିଁ, ନିଜ ଜାତି ବା ମାଛକୁ ମଧ୍ୟ ଗିଳିଥାଏ । ମନୁଷ୍ୟ ମଧ୍ୟ ସେହିପରି ସମଗ୍ର ପ୍ରାଣୀଜଗତକୁ ନିଜ ଉପଯୋଗୀ ଓ ଭକ୍ଷ୍ୟ କରିବା ଅଧିକାରୀ ଭାବେ ଓ କାର୍ଯ୍ୟତଃ କରେ ମଧ୍ୟ । ଏତିକିରେ ମଧ୍ୟ ସନ୍ତୁଷ୍ଟ ନ ରହି ଆତ୍ମସ୍ଵାର୍ଥୀ ମାନବ ନିଜ ଜାତିକୁ ମଧ୍ୟ ଦୁର୍ବଳ ଦେଖି ଗଧ କି ବଳଦ ପରି ବ୍ୟବହାର କରିବାରେ ପଶ୍ଚାତ୍ପଦ ହୁଏ ନାହିଁ । ଏହା ବ୍ୟକ୍ତି, ଗୋଷ୍ଠୀ, ଜାତିଠାରୁ ବିଶ୍ୱରାଷ୍ଟ୍ର କ୍ଷେତ୍ରରେ ମଧ୍ୟ ସମାନ ଭାବେ ପ୍ରବୃତ୍ତ । ମଣିଷ କିଣାବିକା ଏହାର ଗୋଟିଏ ସାମ୍ମୁଖ୍ୟ ମାତ୍ର ।

ସଂସାରରେ ଏପରି କୌଣସି ଦେଶ ବା କାଳ ନାହିଁ ଯେଉଁଠି ଏ ରୀତି ପ୍ରଚଳିତ ନୁହେଁ, କେବଳ ନାମ ରୂପ ପରିବର୍ତ୍ତନ କରିଥାଏ ମାତ୍ର । କି ସୁଦୂର ପୂର୍ବ କି ମଧ୍ୟ ପ୍ରାଚ୍ୟ କି ପାଶ୍ଚାତ୍ୟ ଜଗତ ସର୍ବତ୍ର ଏହା ପ୍ରଚଳିତ । ତେବେ ଚଳିତ ଶତାବ୍ଦୀ ପୂର୍ବର ପ୍ରାୟ ଦୁଇ ଶତାବ୍ଦୀରେ ପାଶ୍ଚାତ୍ୟ ଦାସ ବ୍ୟବସାୟୀ ଓ ମାଲିକମାନେ ମାନବତା ସମ୍ମୁଖରେ ଗୋଟିଏ ଏପରି ଘୃଣ୍ୟ ଭୟାବହ ଦୃଶ୍ୟ ଉପସ୍ଥାପିତ କଲେ ଯେ ଆଜି ଏହାର ନାମ ସ୍ମରଣମାତ୍ରେ ସଭ୍ୟମାନବର ରୋମ ଟାଙ୍କୁରି ଉଠେ ।

ଭାରତ ବର୍ଷରେ ମଧ୍ୟ ଏ ରୀତି ଅତି ପ୍ରାଚୀନକାଳରୁ ପ୍ରଚଳିତ ଥିବା ଜଣାଯାଏ । ବେଦରେ ମଧ୍ୟ ଏହାର ଉଲ୍ଲେଖ ରହିଛି । ପୌରାଣିକ ଯୁଗରେ ରାଜାମାନେ ଗାଈ, ଘୋଡ଼ା ଓ ହାତୀ ସଙ୍ଗେ ସୁପରିଚ୍ଛଦ ବାସ ଓ ନିଷ୍କକଣ୍ଠୀ ( ସୁନା ମୋହରମାଳା ପିନ୍ଧିଥିବା) ଦାସୀ ଶତ ସହସ୍ର ସଂଖ୍ୟାରେ ଯୌତୁକ ଦେଉଥିବା ଉଲ୍ଲେଖ ଅଛି । ଶୁନଃଶେଫକୁ ତାର ଅଭାବଗ୍ରସ୍ତ ପିତାମାତା ନରମେଧ ଯଜ୍ଞ ପାଇଁ ବିକି କରି ଦେଇଥିବା ସର୍ବ ପ୍ରସିଦ୍ଧ । ରାଜୁତି ଯୁଗରେ ରାଜା ଜମିଦାର ମାନେ ମଧ୍ୟ ଏପରି କରୁଥିଲେ । ସମ୍ପନ୍ନ ଲୋକେ ମଧ୍ୟ ଅଳ୍ପବିସ୍ତର ଏହାର ଅନୁକରଣ କରୁଥିଲେ ।

ଦାସମାନଙ୍କ ଉପରେ ପ୍ରଭୁର ସର୍ବବିଧ ଅଧିକାର ରହୁଥିଲା । ଗ୍ରୀସ ରୋମ ପରି ଭାରତରେ ମଧ୍ୟ ବିକ୍ରି ମୁକ୍ତ କରିଦେଇ ପାରୁଥିଲେ । ସନ୍ଥ ତୁଳସୀଦାସ 'ରାମଚରିତ ମାନସ'ରେ

"କୃପା କୋପ ବଧ ବନ୍ଧ ଗୋସାଇଁ ।
ମୋ ପର କରିଅ ଦାସ କୀ ନାଇଁ ॥"

ସ୍ୱୟଂ ରାମଚନ୍ଦ୍ରଙ୍କ ମୁଖରୁ କୁହାଇଥିବା କିମ୍ବା ସାହିତ୍ୟ ଦର୍ପଣରେ ମାନିନୀ ନାୟିକା ଆଗରେ ନାୟକର—

"ଦାସେ କୃତାଗସି ଭବତ୍ୟୁଚିତଃ ପ୍ରଭୂଣାଂ ପାଦ ପ୍ରହାର ଇତି" କହିବା ଦ୍ୱାରା ଏ ଚଳଣିର ପୁଷ୍ଟି ହେଉଥିବା ପ୍ରତ୍ୟକ୍ଷ ଅଟେ । ହେଲେହେଁ ସାଧାରଣତଃ ଏମାନଙ୍କ ପ୍ରତି ନୃଶଂସ ବ୍ୟବହାର କରାଯାଉ ନଥିଲା, ବରଂ ଅନେକେ ବିଶ୍ୱସ୍ତ ଓ ଅନ୍ତରଙ୍ଗ ମଧ୍ୟ ହେଉଥିଲେ । ଦାସ ଦାସୀ ପ୍ରତି ଦୁର୍ବ୍ୟବହାର ଓ ଅବହେଳା ପାଇଁ ରାଜଦଣ୍ଡର ବିଧାନ ମଧ୍ୟ ଥିଲା ।

ସନ୍ତାନ ପ୍ରୀତି ପ୍ରାଣୀ ଧର୍ମ, ଯାହା ମଣିଷଠାରେ ଚରମ ବିକାଶକୁ ଲାଭ କରିଛି । ବେଦର 'ଆତ୍ମା ବୈ ପୁତ୍ର ନାମାସି' ଠାରୁ ଚାଣକ୍ୟଙ୍କ 'ନହି ପୁତ୍ରାତ୍ ପରଃ ସ୍ନେହଃ' ପର୍ଯ୍ୟନ୍ତ ଏହି ଘୋଷଣା କରୁଛନ୍ତି । ତେବେ ଆତ୍ମ ସମାନଜନ୍ମ ପୁତ୍ର କନ୍ୟା ବା ସନ୍ତାନ ନିର୍ବିଶେଷ କୋମଳମତି ଝିଅ ଭଉଣୀଙ୍କୁ ବିକ୍ରି କାହିଁକି କରାଯାଏ ?

ମାନବିକତା ଉପରେ ଜଘନ୍ୟ ଅତ୍ୟାଚାରର ସ୍ୱରୂପ ବଳାତ୍ ଧରି ନେଇ କିମ୍ବା ଯୁଦ୍ଧରେ ବନ୍ଦୀ କରି ଦାସଦାସୀ କରିବାଟାକୁ ଛାଡ଼ିଦେଲେ କୌଣସି ସାଧାରଣ ଭାବେ ଚଳୁଥିବା କାହିଁକି ଭୋକଶୋଷରେ ବି ଚଳୁଥିବା ଖଟିଖିଆ ମଧ୍ୟ ଛେଳି ବାଛୁରୀ ଚରେଇ ପାରୁଥିବା କି ପିଲା ଖେଳାଇ ପାରୁଥିବା ଅଥବା ଗାଁ ମୁଣ୍ଡରୁ କାଠ ପତର ଗୋଟେଇ ଆଣି ପାରୁଥିବା ଆଦି ଛୋଟ କାମରେ ମଧ୍ୟ ସାହାଯ୍ୟ କରୁଥିବା ସନ୍ତାନକୁ କାହିଁକି ବିକି କରିବ ? ନିଜର ଦେହକୁ ସମ୍ଭାଳି ପାରୁ ନଥିବା ପିଲାକୁ କିଏ ବା କାହିଁକି କିଣିବ । ଅତି ଉତ୍କଟ ଦାରିଦ୍ର୍ୟ ବା ନିତାନ୍ତ ଅସହାୟ ଅବସ୍ଥାରେ ନ ପଡ଼ିଲେ କେହି ଏପରି ଜଘନ୍ୟ କାମ କରିବ ନାହିଁ ।

କୋଶଳ ପ୍ରଦେଶ ବା ପଶ୍ଚିମ ଓଡ଼ିଶାକୁ ଗୋଟିଏ ଅବୃଷ୍ଟି ପ୍ରବଣ (**Drought Prone**) ଅଞ୍ଚଳ କୁହାଯାଏ । ଏ ଅଞ୍ଚଳର ଭୂପ୍ରକୃତି ଓ ଭୌଗୋଳିକ ଅବସ୍ଥିତି ହିଁ ଏ ଅଞ୍ଚଳର ଅଧିବାସୀଙ୍କ ଦୁର୍ଭାଗ୍ୟର କାରଣ । ବର୍ଷା ମୌସୁମୀ ବାୟୁର ଖାମ ଖିଆଲ ଉପରେ ନିର୍ଭର କରେ । କୃଷକ ନିଜ ସୁବିଧା ଅନୁସାରେ ବା ନିୟମିତ ବୃଷ୍ଟି ପାଇବାର କେବେ ସ୍ୱପ୍ନ ବି ଦେଖିପାରେ ନାହିଁ । ଅତିବୃଷ୍ଟିରେ ଖାଲ ଜମି ପଚିଗଲେ ଅଳ୍ପ ବୃଷ୍ଟିରେ ଉପର ଜମି ମରିଯାଏ । ଭୀମ ତାରି ଲୁହା ମଇ ଏ ଅଞ୍ଚଳରେ ବୁଲାଇ ନଥିବାରୁ ଖାଲ ଗୋଟେ କୁ ଢିପ ଗୋଟେ ଥିବାର ଜନପ୍ରବାଦ କୌତୁକ ପ୍ରଦ ଅଟେ । ପାହାଡ଼ିଆ ପ୍ରକୃତିର ଜମି । ଉପର ଅଳ୍ପ ଉର୍ବର ପୃଷ୍ଠ ମାଟି । ତଳ ସ୍ତର ଫୁଟି ତଳେ କଠିନ ସ୍ତର ମଧ୍ୟ ଗଡ଼ାଣିଆ । ପାଣି ତଳକୁ ନ ଭେଦି ନଈ ନାଳକୁ ବହିଯାଏ । ମାଟିର ଜଳଧାରଣ ଶକ୍ତି ଅଳ୍ପ ମାଳମାଟି । ଖରାଦିନେ ଶୁଖି ଦାନାଦାର ହୋଇଥାଏ । ଭାଦ୍ରବ ମାସ ନ ହେଲା ପର୍ଯ୍ୟନ୍ତ ମାଟି ଅଠାଳିଆ ହୋଇ ଫହିତ ହୁଏ ନାହିଁ । ପ୍ରଥମ ବର୍ଷାରେ ଅଳ୍ପ ଜୋର ବର୍ଷା ହେଲେ ବି ପାଣି କୁଦି ଆସି ସବୁ ହୁଡ଼ା ଛିଣ୍ଡି ଦିଏ । ମାଟି ଖୋଳିନିଏ ଓ ଆଗକୁ ଗଦା କରିଦିଏ । ବଡ଼ ବର୍ଷା ହେଲେ ଚାରି ପାଞ୍ଚହାତ ଓସାର ଓ ଗାଡ଼ ବି କରିଦିଏ । ଶ୍ରାବଣ ଭାଦ୍ରବର 'ଘର ଛୁଟ୍ ବାହାର କଂଟ୍' ଚାଷୀର ମରାମତିର ଶକ୍ତି ନଥାଏ । ପାଣି ରହେ ନାହିଁ ଫସଲ ହୁଏ ନାହିଁ । ଘନ ଜଙ୍ଗଲର ପ୍ରଭାବରେ ବର୍ଷା ଓ ଜଳଧାରଣ କିମ୍ବା ପର୍ଯ୍ୟାବରଣର ଯାହା ବା ଅନୁକୂଳତା ଚାଷୀ ପାଉଥିଲା ବା ପଚା ପତର ବୋହି ଆସୁଥିବା ଖତସାର ଅନାୟାସ ପାଉଥିଲା, ବର୍ତ୍ତମାନର ନିର୍ବନୀକରଣରେ ତାହା ବି ହରାଇ ବସିଲା । ଚିର ଦାରିଦ୍ର୍ୟ ନିଷ୍ପିଷ୍ଟ ଜର୍ଜର ଶରୀର ଓ ଅବସନ୍ନ ମନର ଚାଷୀକୁ ଭଗବାନ ମଧ୍ୟ ସାହାଯ୍ୟ କରିବାରେ ବିମୁଖ । ଏଠାରେ ଅନ୍ୟ କୌଣସି ଧନ୍ଦା କି ଉଦ୍ୟୋଗ ବି ନାହିଁ । ବାହାରଗତ ଶୋଷକ ବଣିକ ଗୋଷ୍ଠୀ ଛଡ଼ା ସର୍ବସାଧାରଣର ଅବସ୍ଥା 'ନ ମମାର ନ ଜୀବତି' । ଚାଷୀ ଉପରେ ନିର୍ଭର କରୁଥିବା ଜନତାର ଅଶୀ ପ୍ରତିଶତ ଶ୍ରମିକର ଅବସ୍ଥା ନ କହିବାହିଁ ଭଲ ।

ଏପରି ଅବସ୍ଥାରେ କିଂ କର୍ତ୍ତବ୍ୟଂବିମୂଢ଼ ମଣିଷ "ବୁଭୁକ୍ଷିତଃ କିଂ ନ କରୋତି ପାପମ୍" ବା "ମରତା କ୍ୟା ନ ହିଁ କରତା" ନୀତିରେ ଦୁଇ ଚାରିଦିନର ହେଲେ ଆଧାର ଜୁଟେଇବାକୁ ଓ ଘରେ ଥିଲେ ତ ନିଶ୍ଚୟ ମରିବ, ପର ଘରେ ଅନ୍ତତଃ ବଞ୍ଚିହେଲେ ଥାଉ ବିଚାରରେ ପିଲାକୁ ଯଦି ଅଳ୍ପ କିଛି ମୂଲ୍ୟ ନେଇ ବିକିଦିଏ ତ ଦୋଷ କଣ ? କାହାର ?

ପ୍ରାଚୀନ ଶାସ୍ତ୍ରରେ ରାଜାକୁ "ସର୍ବେଷାଂ ବୃତ୍ତିଦଃ ପିତା" ବୋଲି କୁହାଯାଇଛି । ବର୍ତ୍ତମାନ ଯୁଗରେ ମଧ୍ୟ ଦଳମତ ନିର୍ବିଶେଷରେ ଜନତାକୁ କାମ ଓ ମଜୁରି ଦେବା, ଦୁର୍ବଳ ଶ୍ରେଣୀର ରକ୍ଷା କରିବା ସରକାରର ହିଁ କର୍ତ୍ତବ୍ୟ ବୋଲି ଧରାଯାଉଛି ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରଠାରୁ ବିଶେଷ କରି ସ୍ୱାଧୀନତା ପାଇବାର ପରବର୍ତ୍ତୀ କାଳରୁ କୃଷୀର ଅବସ୍ଥା ସୁଧାରିବାକୁ, କୃଷିର ଉନ୍ନତି କରିବାକୁ ନାନା ଯୋଜନା ହେଉଛି ନାନା ବିଭାଗ ଖୋଲୁଛି, ବହୁ ଅର୍ଥ ବରାଦ ହେଉଛି, ଅଥଚ କିଛି ଫଳ ଦିଶୁ ନାହିଁ । ବରଂ କୃଷୀର ନିର୍ଯ୍ୟାତନା ବଢ଼ୁଛି । ନଈନାଳର ପାଣି ବନ୍ଧ ଯାଉଛି; ସେଚିବାର ସାଧନ ନାହିଁ, ଉଠେଇବାର ସାଧନ ନାହିଁ । ମୁଣ୍ଡାକଟାର ସଂଖ୍ୟା ନଗଣ୍ୟ । ପ୍ରଥମ ଭାଗରେ ବର୍ଷା ନ ହେଲେ ମୁଣ୍ଡାକୁ ପାଣି ଆସିବ କୁଆଡ଼ୁ ? ନଦୀ ବନ୍ଧ ଯୋଜନା ମାତ୍ର ଯୋଜନାରେ ରହୁଛି । କେଉଁଠି ପଦ୍ଧ ଘୁଞ୍ଚିଯାଉଛି ତ କେଉଁଠି ବରାଦ ହେଲା ଅର୍ଥ ଅନ୍ୟତ୍ର ଚାଲିଯାଉଛି । କେଉଁଠି କାମ ଏତେ ମନ୍ଥର ଗତିରେ ହେଉଛି ଯେ ଚଳିତ ପୁରୁଷାରେ ତାର ଲାଭ ପାଇବାର ସମ୍ଭାବନା ଦିଶୁ ନାହିଁ । ( କୃଷୀ 'ନିରାଶ୍ରୟଂ ମାଂ ଜଗଦୀଶରକ୍ଷ' ଡ଼ାକି ଛାଡ଼ି ନିରସ୍ତ ହୋଇ ଏବେ 'ଘୋର ବିପଦେ ପଡ଼ି ମରିବା କାଳେ ବୁଡ଼ି ଛାଡ଼ି ତ ଯାଉଅଛ ମୋତେ, ହେ ମହାପ୍ରଭୁ' କହି ବିଳାପ କରୁଛନ୍ତି ମାତ୍ର ) । ଚିର 'ରଜାର ପରଜା' କୃଷୀର କୌଣସି ଆନ୍ଦୋଳନ କି ଦାବୀ କରିବାର ବି ପ୍ରେରଣା କି ଶକ୍ତି ନାହିଁ ।

"ହାତ କଙ୍ଗନ କୋ ଆରସୀ କ୍ୟା", ସରକାର ସବୁ ଜାଣିଛନ୍ତି ? ଦେଖି ଦେଖି ଆଉ କଣ ବା ଦେଖିବାକୁ ଚାହୁଁଛନ୍ତି ? "ପ୍ରତ୍ୟକ୍ଷସ୍ୟ କିଂ ପ୍ରମାଣମ୍" ? ଏହି ପରିସ୍ଥିତିରେ ସତକୁ ସିଧା ସଳଖ ନିଃସଙ୍କୋଚ ଭାବେ ସ୍ୱୀକାର କରି ଜରୁରୀ କାଳୀନ ଭିତ୍ତିରେ ପ୍ରତିକାର ବ୍ୟବସ୍ଥା ନ କରି ବିଧାନ ସଭା ଆଖଡ଼ାରେ ଆଲୋଚନା ପ୍ରତି ଆଲୋଚନା ଆକ୍ରମଣ, ପ୍ରତି ଆକ୍ରମଣ ବାହାସ୍ଫୋଟ ସମୀକ୍ଷା କଲେ କୌଣସି ପ୍ରକାରେ ଫଳପ୍ରସୂ ହେବ କି ?

## ଘରଖିଆ

ଏହା ପ୍ରଥା ନ ହେଲେ ମଧ୍ୟ ଗୋଟିଏ ସାଧାରଣ ଚଳଣି । ଏହାକୁ ମାଲିକ-ମଜଦୁର ବୁଝାମଣାର ଗୋଟିଏ ପ୍ରକାର କୁହାଯାଇ ପାରେ । ସାଧାରଣତଃ ନିଜ ଯତ୍ନ ନେଇ ପାରୁଥିବା ଓ ଛେଳି, ବାଛୁରୀ କି ଗାଇ-ବଳଦ ଚରାଇ ପାରୁଥିବା ବୟସର ( ପ୍ରାୟ ଆଠ ଦଶ ବରଷର ) ପିଲା ଓ ସାମାନ୍ୟ କିଛି ଘର କାମ କରିପାରୁଥିବା ସେହି ବୟସର ଝିଅମାନଙ୍କୁ 'ଘରଖିଆ' ରଖାଯାଏ । ଏମାନେ ମାଲିକର ଘରେ ଘରର ଜଣେ ହୋଇ ରହନ୍ତି । ତାଙ୍କ ଖାଇବା ପିଇବା ତେଲ ତମାଖୁ ଆଦି ମହାଜନ ଘରୁ ପାଆନ୍ତି । ତାଙ୍କ ଯୋଗ୍ୟ ଘରକାମ ବ୍ୟତିରେକେ ମାଲିକ ମାଲିକାଣୀର ଗୋଡ଼ଘଷା ଆଦି ସେବା ମଧ୍ୟ କରିଥାନ୍ତି । ଏମାନେ ସାଧାରଣତଃ ବାତ୍ସଲ୍ୟ ମିଶା ଅନ୍ତରର ବ୍ୟବହାର ପାଇଥାନ୍ତି ନିକଟସ୍ଥ ସେବାକାରୀ ହୋଇଥିବାରୁ ସହୃଦୟ ମାଲିକ ମାଲିକାଣୀର ଅନେକ ଗେହ୍ଲା ମଧ୍ୟ ହୋଇଯାନ୍ତି । କିଛି ବିଶେଷ ସେବାକରି, ବୋଲ-ଆଜ୍ଞାବହ ମାନି ଭଲ ବ୍ୟବହାର ଯୋଗୁଁ ଝିଅ ବୋହୂମାନଙ୍କଠାରୁ ସଦ୍‌ଭାବ ହେତୁ ଅନେକ ପକ୍ଷପାତ ( ଅନୁଗ୍ରହ ) ମଧ୍ୟ ପାଇ ପାରିଥାନ୍ତି । ଏମାନେ ଦୁଷ୍ଟ ସ୍ୱଭାବର ହେଲେ, ମାଲିକ-ମାଲିକାଣୀ ଉଗ୍ର ସ୍ୱଭାବର ହେଲେ କିମ୍ବା କଡ଼ାକାମ ଆଦାୟକାରୀ ( Hard task master ) ହେଲେ କର୍କଶ ବ୍ୟବହାର 'ମଧ୍ୟ ପାଇଥାନ୍ତି, ହେଲେ ଏ ଭିତରେ ମମତାର ଭାବ ନିଶ୍ଚୟ ରହିଥାଏ । ଏମାନେ ମାଲିକ-ମାଲିକାଣୀ ପାଖରେ ବା ସେମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଜଗାରେ ଶୁଅନ୍ତି । ଘରେ ଛେଳି ମେଣ୍ଢା କି ବାଛୁରୀ ଆଦି ନ ଥିବା ଶ୍ରମିକ ଶ୍ରେଣୀର ଲୋକେ ଏ ପରି ଅନ୍ୟ ଘରେ ପିଲା ରଖାଇଥାନ୍ତି । ଘର ଅପେକ୍ଷା ଅଧିକ ଖାଦ୍ୟପେୟ ପରିଧାନର ନିଶ୍ଚୟତା ଯୋଗୁଁ ଅଭିଭାବକ ସେଥିପ୍ରତି ନିଶ୍ଚିନ୍ତ ରହେ । ମହାଜନ ମଧ୍ୟ ଦିନରାତି ହାତ ହାତ ପାଆନ୍ତାରେ ଜଣେ ଲୋକ ପାଇଥାଏ । ମା ବାପ ମଧ୍ୟ ପାଖେ ଥିଲେ ଯା'ଆସ କରୁଥାନ୍ତି ଓ ସଦ୍‌ଭାବ ବଶତଃ କେବେ ଲୁଣଟିକିଏ, ମରିଚଦାଣ୍ଟ କି ତିଅଣ ଟିକିଏ କି ତେଲ ବୁନ୍ଦେକର ଆସରା ଥାଏ । ପର୍ବ ପର୍ବାଣୀ ଭାତ ପିଠା ବାଦ ଯାଏ ନାହିଁ । ଦୂରେ ଥିଲେ ମଝିରେ ମଝିରେ ପୁଅ ଝିଅକୁ ଦେଖିବାକୁ ଆସନ୍ତି. ଖାଇପିଇ ଯା'ନ୍ତି ।

ଏଥିରେ ମାଲିକର କିଛି ସର୍ତ୍ତ ରହେ ନାହିଁ । କାମ କରୁଥିବ ଯାଏ ଘରେ ରହନ୍ତି । ଇଚ୍ଛା କଲେ ମା ବାପ ( ବିଶେଷତଃ ବର୍ଷ ଶେଷରେ-ପୌଷ ପୂର୍ଣ୍ଣିମା ) ଦେଇପାରନ୍ତି କିମ୍ବା ଦୁର୍ଗୁଣିଆ ହେଲେ ମହାଜନ ମଧ୍ୟ ମା ବାପକୁ ଫେରି ଦେଇପାରନ୍ତି । ଅଧିକ ବୟସ ପର୍ଯ୍ୟନ୍ତ ରହିଗଲେ, ବିବାହ ଯୋଗ୍ୟା ହେଲେ ଝିଅକୁ ମା ବାପ ନେଇଯାନ୍ତି ଓ କୁଳ ରୀତି ଅନୁସାରେ ବିବାହ ଦେଇଥାନ୍ତି । ପିଲା ମଧ୍ୟ ଘରକୁ ଯାଇ ବିବାହାଦି କରି ନିଜ ଗୃହସ୍ଥି ପାତେ । ଏ ସମୟରେ ମହାଜନଠାରୁ କିଛି ଅନୁଗ୍ରହ ଅନୁଦାନ ମଧ୍ୟ ମିଳିଥାଏ ।

ମାଲିକ ଘରେ ଏକା ଜାତିର ଟୋକା ଟୋକୀ ଥିଲେ ଓ ବୟଃପ୍ରାପ୍ତିରେ ପରସ୍ପର ପ୍ରତି ଆକୃଷ୍ଟ ହେଲେ ସ୍ୱତଃ ପ୍ରବୃତ୍ତ ହୋଇ ଚଳଣୀ ଅନୁସାରେ ପତିପତ୍ନୀ ହୋଇଯାନ୍ତି । ସଦ୍‌ଭାବ ସମ୍ପନ୍ନ ଥିଲେ ନିଜେ ମାଲିକ ମଧ୍ୟ ଏ ବ୍ୟବସ୍ଥା କରିଦିଏ । ପରେ ସେମାନେ ସ୍ୱତନ୍ତ୍ର ଗୃହସ୍ଥ

ହୁଅନ୍ତି । ମାଲିକ ଘରେ କାମ କରୁଥିଲେ ମଧ୍ୟ ସାଧାରଣ ମଜୁରି ପାଆନ୍ତି । ବିଶେଷ ଅନୁଗ୍ରହ ବି ଥାଏ । 'ଯାର ସେବା ତାର ଲେବା' ଲୋକ ବଚନ ପ୍ରସିଦ୍ଧ ।

ବୟସ ଅନୁପାତରେ ମାଲିକଙ୍କୁ ଦାଦି (ଅଜା), ବଡୁ (ଦଦେଇ), ବାପା, କକା, ଆଦି ସମ୍ବନ୍ଧରେ ଡ଼ାକନ୍ତି ଓ ଘରର ଅନ୍ୟାନ୍ୟ ଲୋକଙ୍କୁ ତଦନୁଯାୟୀ ମାନ୍ୟ କରିଥାନ୍ତି ।

ଆବଶ୍ୟକ ଥିଲେ ଲୋକେ ଦରିଦ୍ର ମାତାପିତାଙ୍କୁ ପ୍ରବର୍ତ୍ତାଇ ମଧ୍ୟ ପିଲାକୁ ଘରଖିଆ ରଖିଥାନ୍ତି । ଏଥିପାଇଁ ଅଭିଭାବକଙ୍କୁ କିଛି ଅର୍ଥ ମଧ୍ୟ ଦେଇଥାନ୍ତି । ଅତଃ ଏହାକୁ ମଧ୍ୟ ପିଲା 'ବିକା-ଘିନା' କୁହାଯାଇଥାଏ । ହେଲେ ଅଭିଭାବକ ଇଚ୍ଛା କଲେ ଅର୍ଥ ଫେରାଇ ଦେଇ ପିଲାକୁ ନେଇ ଯାଇ ଧାରେ ଏହା ଏକ ରକମ ମୁଣ୍ଡବନ୍ଧକ କୁହାଯାଇ ପାରେ । ଫେରାଇ ନଦେଲେ ସବୁଦିନ ପାଇଁ 'ତୁଇ ପାଏଲୁ ନେ' କହି ମହାଜନଠାରେ ଫିଙ୍ଗି ଦେଲେ, ଦୈବାତ୍ ମାତାପିତାର ମୃତ୍ୟୁ ଯୋଗୁଁ କି ଦାରିଦ୍ର୍ୟର ତାଡ଼ନାରେ ନିରୁଦ୍ଦିଷ୍ଟ ହୋଇଯିବା କାରଣରୁ ପିଲା ଅଭିଭାବକ ହୀନ ହୋଇ ଗଲେ, ସେ ପିଲା ପୂର୍ଣ୍ଣ 'ପିଲପୋଷ' ହୋଇଯାଏ । ଅତି ଦରିଦ୍ର ଭବିଷ୍ୟତର ଆଶାହୀନ ଅଥବା ଆସନ୍ନ ମୃତ୍ୟୁର ଆଶଙ୍କା ଗ୍ରସ୍ତ ଅନ୍ୟ ଆଶ୍ରୟ ନଥିବା ମାତାପିତା ସବୁଦିନ ପାଇଁ, ମହାଜନଠାରୁ କିଛି ଅର୍ଥ ନେଇ ପିଲାକୁ 'ବିକି' ଦେଇଥାନ୍ତି । ଏହା ପୂର୍ଣ୍ଣ 'ଘିନା' ହୋଇଥିଲେ ହେଁ ମୂଲ୍ୟ ପ୍ରତୀକମାତ୍ର ଅଳ୍ପ ହିଁ ହୋଇଥାଏ । ଏପରି ପିଲା କିମ୍ବା ଯେ କୌଣସି ମତେ ବି ହେଉ ଘରଖିଆ ପିଲା ଅନାଥ ହୋଇଗଲେ ସେ ମାଲିକର 'ପିଲ୍ପୋଷ' ହିଁ ହୋଇଯାଏ । ଏପରି ପିଲାକୁ ଘରୁ ନିକାଲି ଦେବା ସମାଜରେ ଘୋର ନିନ୍ଦାର ବିଷୟ ହୋଇଥାଏ ।

ଆଦିବାସୀ ହରିଜନ ଓ ଅନ୍ୟ ପାଟକୀ ଜାତି ବିଶେଷ କରି ସ୍ୱଜାତୀୟ ପୁଅଝିଅଙ୍କୁ ଘରବାହାର ସବୁ ଛୁଆଁ ଛିଇଁ କରିପାରୁଥିବା ଦୃଷ୍ଟିରୁ ରଖିଥା'ନ୍ତି । ନିକଟ ଦୂରର କିଛି ସମ୍ପର୍କିତ ଥାଏ ହିଁ, ତଦନୁଯାୟୀ ମାନ୍ୟ କରିଥାନ୍ତି । ବୟସ୍କ ହେବା ପର୍ଯ୍ୟନ୍ତ ରହିଗଲେ ପୂର୍ବୋକ୍ତ ରୀତିର ଅନୁସରଣ ହୋଇଥାଏ । ଗୁଣ, କର୍ମଠତା, ମାନ୍ୟ-ବ୍ୟବହାର ଆଦିରେ ମୁଗ୍ଧ ହୋଇ କିମ୍ବା ପ୍ରୀତି ଜାତ ହୋଇଗଲେ ଅନେକେ ଏମାନଙ୍କୁ ବୋହୁ ବା ଜୁଆଁଇଁ ମଧ୍ୟ କରିନିଅନ୍ତି । ସ୍ୱଜାତୀୟ କିଛି ନା କିଛି ବନ୍ଧୁତ୍ୱ ସମ୍ପର୍କ ଥିବାରୁ ଏଥିରେ ମାନ ପ୍ରତିଷ୍ଠାର ପ୍ରଶ୍ନ ନ ଥାଏ ; ବରଂ ଚିରଦିନ ପାଇଁ ନିଜର କରିବାର ପ୍ରଶସ୍ତି ମିଳିଥାଏ ।

ଅଳ୍ପ ବୟସ୍କା ଝିଅକୁ ବୋହୁ ଭାବରେ ରଖି ବୟଃ ପ୍ରାପ୍ତିରେ ବିବାହ ବିଧି କରି ହେଉଥିବାର ଓ କିଶୋରୀ ଝିଅ ପାଇଁ ଘର ଜୁଆଁଇଁ ରଖି ପରେ 'ଗୁହଳ ଟିକା' ଦେଉଥିବାର ପ୍ରଥା ମାନ ମଧ୍ୟ ଥିବାରୁ, ଏହାକୁ ମଧ୍ୟ ସେ ରୂପରେ ଗ୍ରହଣ କରି ନିଆଯାଏ ।

ପୂର୍ଣ୍ଣ ବୟସ୍କମାନେ ମଧ୍ୟ ଘରେ ରାନ୍ଧିବା ଲୋକ ନ ଥିଲେ, ଦୂରଗାଁର ମହାଜନ ହୋଇଥିଲେ କିମ୍ବା 'ଠେଙ୍ଗୁଆ' (ଅବିବାହିତ) ଆଦି କେତେକ ପରିସ୍ଥିତିରେ ହଳିଆ ବିଧି ଅନୁସାରେ 'ବାହାବନ୍ଧା' ନେଇ ଓ ଅଳ୍ପକିଛି ପାଉଣା ତଥା ହଳିଆମାନଙ୍କ ବୈଧାନିକ ଭୂତି ଭରି ଆଦି ପାଇ ମହାଜନ ଘରେ ଦୁଇ ଓଳି ଖାଇ ରହନ୍ତି । ଏହାକୁ ମଧ୍ୟ 'ଘରଖିଆ' ହଳିଆ ବୋଲନ୍ତି ।

ଏପରି ଦେଖିବାକୁ ଗଲେ ଏହା ସମାଜର ଆର୍ଥିକ ଦୁର୍ଗତି ଜନ୍ୟ ବଢ଼ିବାର ଗୋଟିଏ ସ୍ୱତଃ ଉଦ୍ଭୁତ ମାନବୀୟ ବ୍ୟବସ୍ଥା ହେଲେ ମଧ୍ୟ ଦାରିଦ୍ର୍ୟ ହିଁ ଏହାର ମୂଳ କାରଣ ହୋଇଥିବାରୁ ସ୍ୱାଧୀନତାର ଏତେ ବର୍ଷ ପରେ, ନାନା ଯୋଜନାସତ୍ତ୍ୱେ ଅଦ୍ୟାବଧି ବଢ଼ିରହିଥିବା ସରକାରଙ୍କ ଅପାରଗତା ଓ ଚରମ ଅବହେଳାର ପ୍ରମାଣ ନୁହେଁ କି ?

## ପିଲ ପୋଷ

କେହି ଦାବୀ କରୁ ନ ଥିବା ନିତାନ୍ତ ଅନାଥ ଶ୍ରେଣୀ ପିଲା କିମ୍ବା ନିତାନ୍ତ ଅସହାୟ ଅସମର୍ଥ ମାତା ପିତା ଦ୍ୱାରା ସମର୍ପିତ ପିଲାକୁ ଯଦି କେହି ସହୃଦୟ ବ୍ୟକ୍ତି ଦୟାପରବଶ ହୋଇ ନିଜ ଘରେ ରଖି ତାର ପାଳନ ପୋଷଣ କରେ ହେଲେ ତାକୁ 'ପିଲ ପୋଷ' କୁହାଯାଏ । ଘରେ ତାର ସ୍ଥାନ ନ୍ୟୂନ ହେଲେ ମଧ୍ୟ ସେ ଘରର ଜଣେ ହୋଇ ରହେ । ଭବିଷ୍ୟତରେ ଘରର କାମଧନ୍ଦାରେ ଭାଗ ନେବାର ଆଶା ସ୍ୱାଭାବିକ ହେଲେ ହେଁ, ଏ ଦାୟିତ୍ୱ ଗ୍ରହଣ ମୂଳତଃ ସହୃଦୟତା ଓ ଦୟାପରବଶତା ହିଁ ଅଟେ । ବୈଧାନିକ ରୀତିରେ ନ ହେଲେ ମଧ୍ୟ ବ୍ୟବହାରିକ ରୀତିରେ ସେ ପାଳକର 'ଧର୍ମପୁଅ' ହିଁ ହୋଇଯାଏ । ତାର ମାତା ପିତା ଥିଲେ କେବେ କେବେ ପୁଅକୁ ଦେଖିବାକୁ ଆସିଥାନ୍ତି । ଆସିଲେ ଖାଇପିଇ ଯା'ନ୍ତି । କେବେ କିମିତି ଯିବା ବେଳେ ଧାନ ମାଣେ ଅଧେ କି ପାଲଟା କପଡ଼ା ଖଣ୍ଡେ ବି ପାଇଥାନ୍ତି । ତେବେ ଏହା ସହୃଦୟତା ଓ ସୌଜନ୍ୟ ମୂଳକ ଅଟେ । ଦାବୀ ନ ଥାଏ । କ୍ରମେ ପାଳିତ ଓ ପାଳକ ମଧ୍ୟରେ ମମତା ମଧ୍ୟ ଆସିଯାଏ । ପରବର୍ତ୍ତୀ କାଳରେ ଏମାନେ "ପେଟେ ନାହିଁ ଧରିଥିଲେ ଭି ଭାତେ ତ ପୋଷିଛନ୍'

ବୋଲି କୃତଜ୍ଞତା ଦେଖାଇଥାନ୍ତି । ବୟସ ଅନୁସାରେ ଯଥା ଶକ୍ତି ଘରର କାମ ମଧ୍ୟ ତୁଲାଉଥାନ୍ତି । ସ୍ଥିର ହୋଇଥିଲେ ବିବାହ ଯୋଗ୍ୟ ହେଲେ ବର ଠିକଣା କରି ତାର ଜାତି କୁଟୁମ୍ବ ଜରିଆରେ ବିବାହ ସମ୍ପନ୍ନ କରି ଦିଆଯାଏ । ପୁରୁଷ ପିଲା କ୍ରମେ ଗୃହକର୍ମରେ ଅଧିକ ଦାୟିତ୍ୱ ତୁଲାଇଥାଏ । ଭଲଗୁଣ ଥିଲେ ଓ ସଚ୍ଚୋଟ କର୍ମକୁଶଳ ହେଲେ ତ କୃଷି କାମରେ ସେ ସରଦାର (Work cirkar) ବନିଯାଏ । ବୟସ୍କ ହେଲେ ତାର ବି ବିବାହ କରି ଦିଆଯାଏ । କିଛି ଦିନ ତ ଘରର ପୁଅ ବୋଲି ହିଁ ପରି ରହନ୍ତି, ପରେ ଦାୟିତ୍ୱ ବଢିଲେ ସେମାନଙ୍କୁ ଅଲଗା କରି ଦିଆଯାଏ ଓ ସେମାନେ ସ୍ୱତନ୍ତ୍ର ଭାବେ ନିଜର ଗୃହସ୍ଥି ସମ୍ଭାଳନ୍ତି । ପାଳକ ଘରେ ବି ଅନ୍ୟାନ୍ୟ ହଳିଆ ଚାକର ପରି ମାସିକ ବା ବାର୍ଷିକ ପାଉଣା ପ୍ରଚଳିତ ସର୍ତ୍ତ ଅନୁସାରେ ପାଆନ୍ତି । ବିଶେଷ ଅନୁଗ୍ରହ ତ ଥାଏ ହିଁ । ତାଙ୍କର ମୁଖ୍ୟତା ବି ବରାବର ରହିଥାଏ । ଅନ୍ୟ ହଳିଆ-ମାନେ ବି ତାକୁ ମହାଜନ ଘରର ଜଣେ ପରି ଖାତିର କରନ୍ତି । ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଭାବେ ଅନ୍ୟତ୍ର ବି ରହିପାରନ୍ତି । ଅଲଗା ହେବା ସମୟରେ ପାଳକ ତାକୁ କିଛି ସମ୍ବଳ ଓ ଘରକରଣା ଜିନିଷପତ୍ର ବି ଦେଇଥାଏ । ପୂର୍ବେ ଥିଲା ବାଲା ବଳଦ କି ଗାଈପଟେ ଓ କିଛି ଜମି ମଧ୍ୟ ଦେଉଥିଲେ । ସ୍ୱାଧୀନ ହେଲେ ବି ଏମାନେ ପାଳକର ପ୍ରଜା ହୋଇ ରହନ୍ତି । ଏ ସମ୍ବନ୍ଧ ପୁରୁଷାନୁକ୍ରମେ ରହିଥାଏ । ଅନେକ ପୁରୁଷ ବିତିଗଲେ ଓ ଦୂରଦୂରାନ୍ତର ହୋଇଗଲେ ବି ସ୍ମୃତି ରହିଥାଏ ଓ ଦୈବାତ୍ ଭେଟ ହୋଇଗଲେ କି ପରିଚୟ ହୋଇଗଲେ ଆତ୍ମୀୟ ବ୍ୟବହାର ହୋଇଥାଏ । ପିଲପୋଷ ବି ପରେ ପ୍ରଜା ହିଁ ବୋଲାଏ ।

## ପରଜାଘିନା

ଏ ପ୍ରଥାର ଆରମ୍ଭ କେବେ ଠାରୁ ହୋଇଛି କହିବା କଠିନ । ଏହା ଗୋଟିଏ ସାମନ୍ତଶାହି ପ୍ରଥା । ଏଥିରେ ଅନେକ ପ୍ରଜା ଥିବା ଗୋଟିଏ ସମ୍ଭ୍ରାନ୍ତ କୁଟୁମ୍ବର ଲକ୍ଷଣ ରୂପେ ଧରାଯାଉଥିଲା । ପ୍ରଜାମାନେ ମଧ୍ୟ 'ମୁଁ ଅମୁକ ଘରର ପ୍ରଜା' ବୋଲି ଗୌରବ ଅନୁଭବ କରୁଥିଲେ । ରାଜାଶ୍ରିତ, ମୁଖିଆ ସାମନ୍ତ ଓ ସମ୍ପନ୍ନ ଲୋକମାନେ ପରଜା ଘିନୁ ଥିଲେ । ବ୍ରାହ୍ମଣ ମାନେ ଲୁଣବ୍ୟବସାୟ ଓ ମହାଜନୀ କରୁଥିବାରୁ ପ୍ରାୟଃ ସମସ୍ତ ବ୍ରାହ୍ମଣ ପ୍ରଜା ଘିନୁଥିଲେ । ଗରିବ ଲୋକମାନେ କରଜ ସୁଝି ନପାରି ପରିଶେଷରେ ମହାଜନର ପ୍ରଜା ହୋଇ ସବୁ ଋଣ ମାଫ କରାଇ ନେଉଥିଲେ । ସାଧାରଣ ଚଳାଚଳ ଥିବା ଲୋକ ମଧ୍ୟ ନିଜ ଗୌରବ ବଢ଼ାଇବା ପାଇଁ କୌଣସି ଜଣାଶୁଣା ଲୋକ-ଧନୀ କି ରାଜମାନ୍ୟ ମହାଜନଠାରେ ପ୍ରଜା 'ବିକି' ହେଉଥିଲେ । ଉପାୟନାହିଁ ଧରି ଯାଇ ପ୍ରଜା ଶାଢ଼ୀ ବାନ୍ଧି ହୋଇ ଆଡ଼ମ୍ବର ସହ ଫେରୁଥିଲେ । ଏ ମାନେ ଘିନୁର ଧର୍ମସୂତ୍ର ବା ସ୍ମୃତିର 'ଯଷ୍ଟାହ୍ମାନଂ ନିବେଦୟେତ୍' ଶ୍ରେଣୀର ଏକ ପ୍ରକାର । ଦାରିଦ୍ର୍ୟମାନେ କିଛି ସାହାଯ୍ୟ ପ୍ରାପ୍ତି ଆଶାରେ ମଧ୍ୟ ପ୍ରଜା ଘିନେଇ ହେଉଥିଲେ । ମହାଜନକୁ ସାଆଁକାର (ସାହୁକାର) କହୁଥିଲେ । ଏହା ଅଧମପକ୍ଷରୁ ହିଁ ପ୍ରବୃତ୍ତ ହେଉଥିଲା । ସାଆଁକାରକୁ ପ୍ରଜା ଖୋଜିବା କିମ୍ବା ଏଥିପାଇଁ କାହାକୁ ପ୍ରବର୍ତ୍ତାଇବା ଦରକାର ପଡୁ ନ ଥିଲା । ବରଂ ଅବସନ୍ନ ଲୋକକୁ ତା'ର ହିତାକାଂକ୍ଷୀ ମାନେ ହିଁ ଅମୁକ ଲୋକର ପ୍ରଜା ହୋଇ ଯା ବୋଲି ପ୍ରବର୍ତ୍ତାଉଥିଲେ । ଗୌରବା-ନ୍ୱେଷୀମାନେ ପାଖ ପାଖି ହୋଇ ସେବା ସମ୍ମାନ ଆଦି ଦ୍ୱାରା ମହାଜନକୁ ପ୍ରଭାବିତ କରି ପ୍ରଜା ହେଉଥିଲେ । ଅଧିକ ସଂଖ୍ୟକ ପ୍ରଜା ଥିବା ଓ ସମ୍ମାନ୍ୟ ଲୋକର ପ୍ରଜା ହେବା, ଉଭୟ ନିଜ ନିଜ ଗୋଷ୍ଠୀ ମଧ୍ୟରେ ଗୌରବର ବିଷୟ ହେଉଥିଲା । ରାଜ୍ୟର ସାଧାରଣ ଅଧିବାସୀ ତ ରାଜାର ପ୍ରଜା ହେଉ ଥିଲେ ହିଁ ସାଆଁକାର ଭାବରେ ମଧ୍ୟ ରାଜ୍ୟର ପ୍ରଜା ରହୁଥିଲେ ଓ ବିଶେଷ ଅନୁଗ୍ରହ ପାତ୍ର ହେଉଥିଲେ । ମୁଖ୍ୟତ ଏ ଅଞ୍ଚଳରେ ଗଉଡ଼ ଓ ସଁଉରାମାନେ ହିଁ ପ୍ରଜା ହେଉଥିଲେ । ତେବେ ଅସ୍ପୃଶ୍ୟ ହୋଇଥିବାରୁ ଏମାନେ ବର୍ଣ୍ଣଜାତି ଅପେକ୍ଷା ଆଦିବାସୀମାନଙ୍କ ଅଧିକାଂଶ ଭାବରେ ପ୍ରଜା ହେଉଥିଲେ ।

ଏ ସମ୍ପର୍କ ପୁରୁଷାନୁକ୍ରମିକ ରହୁଥିଲା । ଅର୍ଥାତ୍ ଯେ ପରଜା ଘିନିବ ଆଉ ଯେ ବିକା ହେବ ସେମାନଙ୍କ ଉତ୍ତର ପୁରୁଷଙ୍କ ମଧ୍ୟ ସେ ସମ୍ପର୍କ ରହୁଥିବ । ଅଧିକ ସଂଖ୍ୟକ ପ୍ରଜା ଥିଲେ ମହାଜନର ପୁଅମାନେ ଭାଇ ଭାଗ ହେଲା ବେଳେ ପ୍ରଜାମାନଙ୍କୁ ମଧ୍ୟ ଭାଇମାନେ ଭାଗ କରି ନେଉଥିଲେ । ଯେଉଁ ପ୍ରଜା ଯାର ଭାଗରେ ପଡ଼ିଲା ତାକୁ ପୂର୍ତ୍ତି ସମ୍ମାନ ଓ ବିଧିବିଧାନ ସହ ମାନୁଥିଲା ଓ ଅନ୍ୟମାନଙ୍କୁ ସାମାନ୍ୟ ସମ୍ମାନ କରୁଥିଲା । ଭାଗ ନ ହୋଇ ବଂଶର ପ୍ରଜା ହୋଇ ମଧ୍ୟ ରହୁଥିଲେ ଓ ନୈକଟ୍ୟ ଓ ପରସ୍ପର ସମ୍ଭାବନା ଅନୁପାତରେ ଚଳାଚଳ ହେଉଥିଲେ ।

ଭାଗ୍ୟଚକ୍ରର ଘୂର୍ଣ୍ଣନରେ ସାହୁକାର କି ପ୍ରଜା କେହି ଛୋଟ ଭାଙ୍ଗି ଗଲେ ସମ୍ପନ୍ନପକ୍ଷ ଅନ୍ୟପକ୍ଷକୁ ପୁନଃ ସଂସ୍ଥାପିତ ହେବାପାଇଁ ଯଥା ସାଧ୍ୟ ସାହାଯ୍ୟ କରୁଥିଲା । ବହୁପୂର୍ବ ବା ଆଧୁନିକ ଆଇନକାନୁନର ପ୍ରବର୍ତ୍ତନ ହେବା ପୂର୍ବ ପର୍ଯ୍ୟନ୍ତ କୌଣସି ପ୍ରଜା ନିର୍ବଂଶ ହୋଇଗଲେ ଓ କେହି ଦାବୀଦାର ନ ଥିଲେ ପ୍ରଜାର ସମ୍ପତ୍ତିକୁ ସାହୁକାର ନେଉଥିବାର ମଧ୍ୟ ଶୁଣାଯାଏ । ଏହା କ୍ୱଚିତ୍ ହିଁ ହେଉଥିଲା ।

କେହି ପ୍ରଜା ସମ୍ପନ୍ନ ହି ସମ୍ମାନ ଅର୍ଜନକରି ନିଜକୁ ଗୌରବାନ୍ୱିତ ମନେ କରି ପ୍ରଜା ନ ରହିବାକୁ ଇଚ୍ଛା କଲେ ମହାଜନଙ୍କୁ ପ୍ରସନ୍ନ କରି କିଛି ଉପାଦ୍ୟନ ଆଦି ଦେଇ ତାର ପ୍ରଜାତ୍ୱରୁ ମୁକୁଳି ମଧ୍ୟ ଯାଇ ପାରୁଥିଲା । ତାର ପରେ ଉଭୟଙ୍କ ମଧ୍ୟରେ ସାଧାରଣ ସଦ୍‌ଭାବ ସୌଜନ୍ୟ ସମ୍ପର୍କ ମାତ୍ର ରହୁଥିଲା । ପ୍ରଜାର ମଧ୍ୟ ପ୍ରଜା ରହୁଥିଲେ ।

ପ୍ରଜା ଦୁଷ୍ଟ କି ଅମାନିଆଁ ହେଲେ ସାହୁକାର 'ଦଣ୍ଡସ୍ୱରୂପ' ତାକୁ ଅନ୍ୟ ପାଖରେ ବିକି ମଧ୍ୟ ଦେଇ ପାରୁଥିଲେ । ଏହା ମଧ୍ୟ ପ୍ରଥାକାଳୀନ ହିଁ ଥିଲା । କିନ୍ତୁ ଏହା ନିତାନ୍ତ ଗର୍ହିତ ଓ ଅତ୍ୟନ୍ତ ସମ୍ମାନ ହାନିକର ଥିବାରୁ ଏହା ମାତ୍ର ସୈଦ୍ଧାନ୍ତିକ ଭାବନାରେ ହିଁ ରହିଥିଲା । କେହି କାର୍ଯ୍ୟକାରୀ କରୁ ନ ଥିଲେ । ବେଳେବେଳେ ପ୍ରଜାମାନେ 'ଇଁ ମୁହଁ ତମର ଆଏ, ତମେ ବିକି ଭି ଦେଇପାରେ' କହି ଆନୁଗତ୍ୟ ଦେଖାଉଥିଲେ ମାତ୍ର ।

ବିବାହାଦି ମଙ୍ଗଳକାର୍ଯ୍ୟରେ ଆତ୍ମୀୟ ବନ୍ଧୁ ତୁଲ୍ୟ ପ୍ରଜାନଙ୍କୁ ମଧ୍ୟ ହଳଦିଗୁଆ ସହ, ହଳଦିଗୁଣ୍ଡିକୁ କପାଳରେ ଟୀକା ଦେଇ ନିମନ୍ତ୍ରଣ କରା ହେଉଥିଲା। ସେମାନେ ମଧ୍ୟ ନିଜ ଅନୁରୂପ କିଛି ଉପାଦ୍ୟନ(ଗୁଡ଼ପ୍ର ମୁଗ ଘିଅ ତଥା ପଟେ ଖାସି ଆଦି) ଧରି ବାଦାବବାଜା ସହ 'ବରନି' ଯାଉଥିଲେ । ପହଞ୍ଚାଇ ଦେଇ ବାଜା ଫେରିଯାଇ ବିଦା ହେଉଥିଲା, କିମ୍ବା ସମ୍ପନ୍ନ ପ୍ରଜା 'ଗୋଟେ ବଜା' କି କାର୍ଯ୍ୟଶେଷ ପର୍ଯ୍ୟନ୍ତକୁ ଉପାଦ୍ୟନ ଦେଉଥିଲା । କାର୍ଯ୍ୟଶେଷରେ ପ୍ରଜାମାନଙ୍କୁ ଯଥା ଯୋଗ୍ୟବସ୍ତୁଆଦି ଦେଇବିଦାକରା ହେଉଥିଲା ମୁହାଁଳିଆ ବା ଅନୁଗ୍ରହ ପ୍ରାପ୍ତ ପ୍ରଜାମାନେ ହାତି ହାତି କି ବିଦାକି ନେଉଥିଲେ । ସାହୁକାରର ଗୁହାଳ ଭରପୂର ଥିଲେତ ବାଛି କରି ଗାଈ କି ବଳଦ ପଟେ କି ଯୋଡ଼ାଏ ସାହୁକାର ନ ଦେଲେ କି ଟାଣି ନେଉଥିଲେ । ସାହୁକାର ନାହିଁ ନାହିଁ କରି ଶେଷରେ ହସି ହସି ବିଦାୟ ଦେଉଥିଲା । ଏ ସବୁ ଅବଶ୍ୟ ସାମନ୍ତବାଦୀ ଗେଲବସରିଆ ଅଳି-ଆର୍ଦ୍ଦଳି ଥିଲା ଓ ଉଭୟ ପକ୍ଷୀୟ ଥିଲା । ଆପଦ ବିପଦ ଦୁଃଖ ଶୋକ ମୃତାହି କ୍ରିୟା ଆଦିରେ ମଧ୍ୟ ଏହିପରି ପାରସ୍ପରିକ ବ୍ୟବହାର ଥିଲା ।

ପୂର୍ବେ ଚରା ଅତି ସୁଲଭ ଥିବାରୁ ଗାଈ ମଇଁଷି ସଂଖ୍ୟା ବିଶେଷ ଥିଲା । ପ୍ରଜାମାନେ, ବିଶେଷ କରି ଗଉଡ଼ ପ୍ରଜା, ସାହୁକାରର ଗାଈମଇଁଷି ରଖୁଥିଲେ ଓ ପୂର୍ବକାଳ ମାନଙ୍କରେ ଘିଅ ଦୁଧ ଆଦି ସାହୁକାର ଘରକୁ ପର୍ବାଣି (ପରମାଣ) ନେ ଯାଉଥିଲେ । ଘିଅ ଘଡ଼ା କି ମାଠିଆକୁ ମୁଣ୍ଡରେ ରଖି ଦ୍ୱାର ଦେଶରେ ଠିଆ ହୋଇ ରହୁଥିଲେ, ଓହ୍ଲାଉ ନ ଥିଲେ । ମାଲିକାଣୀ ଖଣ୍ଡେ ନୂଆ ଖଦିର ଗେଣ୍ଡୁଆ କରି ତଳେ ରଖିଦେଲେ, ତା ଉପରେ ଘୃତ ପାତ୍ରକୁ ରଖୁଥିଲେ । ମାଲିକାଣୀ ଘିଅ ଉଠାଇ ନେବା କ୍ଷଣି ଉକ୍ତ ଖଦିକୁ ଉଠାଇ ମୁଣ୍ଡରେ ବାନ୍ଧୁଥିଲେ । ଏହା ତାଙ୍କ ସମ୍ମାନ ଥିଲା । ଖାଇବା ସମୟରେ ଘରର ଭୂଆସୁଣୀ ଭାତ ନ ପରଷିଲେ, 'ମୁଇଁ ତାର ଲୋକ ଆଏଁ କାଏଁ ? କହି ଉଠି ରୁଷି ଯାଉଥିଲେ । ଏହା ଶିଷ୍ଟାଚାର ଥିଲା ।

'ପୋ-ପରଜା' ଏହି ଯୁଗ୍ମ ଶବ୍ଦ ପ୍ରୟୋଗ ମଧ୍ୟ ସାହୁକାର ପ୍ରଜା ମଧ୍ୟର ଗଭୀର ସମ୍ପର୍କର ସୂଚନା ଦିଏ । ପ୍ରଜା ଉପରେ ସାହୁକାରର କୌଣସି ବିଶେଷ ଅନୁଗ୍ରହ ଦେଖି କେହି ଈର୍ଷା ପରାୟଣ ହେଲେ ତଟସ୍ଥ ଲୋକେ 'ତାର ପୋ-ପରଜାକେ ନାହିଁ ଦେବା କାଏଁ ?' କହୁଥାନ୍ତି । କେହି କାହାରଠାରୁ ଅଯଥା ଗୁଡ଼ ଗୃଦ୍ଧି ଥିଲେ, "ତୁଇ କାଏଁ ମୋର ପୋ କି ପରଜା ଅଛୁ ଯେ ଛାଡ଼ିଦେବି" କହୁଥାନ୍ତି । ପୂର୍ବ ପୁରୁଷ ଅର୍ଜିତ ଧନ ପରି ଜନରେ ମଧ୍ୟ ଦାବୀ ଥାଏ । ପ୍ରସଙ୍ଗ ପଡ଼ିଲେ, 'ଆମର ପୁରୁଷା ଅମଳର ସାଆଁକାର / ପରଜା ଆଏ' କହୁଥାନ୍ତି । ମାତ୍ର ପ୍ରାଚୀନତା-ବିଦ୍ୱେଷୀ ସାମ୍ପ୍ରତିକ ମନୋଭାବରେ ଯେଉଁ ଦୃଷ୍ଟିରେ ଦେଖାଯାଉଥାଉଁ ନା କାହିଁକି ଓ ବର୍ତ୍ତମାନ ତାର ଆବଶ୍ୟକତା କି ଉପଯୋଗିତା ନ ଥିଲେ ମଧ୍ୟ ତତ୍ତ୍ୱସ୍ୱରୂପରେ ଏହା ନିନ୍ଦନୀୟ କି ?

ବର୍ତ୍ତମାନ ଯୁଗର ବ୍ୟକ୍ତି ସ୍ୱାତନ୍ତ୍ର୍ୟର ହାଓ୍ୱାରେ ଏ ସବୁ ଚଳଣୀ ପ୍ରାୟଃ ଲୁପ୍ତ ହୋଇ ଆସିଲଣି । ତଥାପି ପରିଚୟ ଓ ସାନ୍ନିଧ୍ୟ ଥିଲେ ଅଳ୍ପ ବିସ୍ତର ତଥୈବ ବ୍ୟବହାର ରହିଛି । ଆନ୍ତତଃ ମାନ୍ୟ ସମ୍ମାନ ତ ନିଶ୍ଚୟ ଅଛି । କିଏ କା'ର ପ୍ରଜା ଥିଲା କିଏ କାର ସାହୁକାର ଥିଲା ବର୍ତ୍ତମାନ ସୁଦ୍ଧା ପରଂପରାକ୍ରମେ ଘରମାନଙ୍କରେ ଚର୍ଚ୍ଚା ହେଉଥିବା ଦେଖାଏ । ବିଚ୍ଛିନ୍ନ ହୋଇ ଦୁଇ ତିନି ପୁରୁଷାରେ ମଧ୍ୟ ଅକସ୍ମାତ୍ ଭେଟ ହୋଇ ପରିଚିତ ହୋଇଗଲେ ପରସ୍ପରରେ କୌଣସି ଦୂରବନ୍ଧୁ ସହ ଭେଟ ହେଲା ପରି ମାନ୍ୟ ସମ୍ଭ୍ରମ କି ଆଦର ଆପ୍ୟାୟନର ଅଭାବ ନ ଥାଏ ।

ଲେଖକ ଜଣେ ପ୍ରାଚୀନ ବଂଶୀୟ ଓ ପରଂପରାକ୍ରମେ ଖଡ଼ିଆଳ ରଜାଙ୍କ କୁଳାଚାର୍ଯ୍ୟ ଦୁର୍ଗତ ଚନ୍ଦ୍ରଶେଖର ପାଟଯୋଷୀଙ୍କ କନିଷ୍ଠ ସନ୍ତାନ ଅଟେ । ପିତାମହଙ୍କ ସମୟ ପର୍ଯ୍ୟନ୍ତ ଯଥେଷ୍ଟ ସଙ୍ଗତି ସମ୍ପନ୍ନ ମଧ୍ୟ ଥିଲେ । ଅତଃ ପ୍ରଜା ସଂଖ୍ୟାର ବାହୁଲ୍ୟ ରହିଛି । ଖଡ଼ିଆଳ, ବଲାଙ୍ଗିର ଜିଲ୍ଲାର ସଂଲଗ୍ନ ଅଞ୍ଚଳ, କଳାହାଣ୍ଡି ଓ ଜୟପୁର ଅଞ୍ଚଳ ପର୍ଯ୍ୟନ୍ତ ବି ପ୍ରଜାବର୍ଗ ପ୍ରସରି ଯାଇଛି । ସେମାନଙ୍କ ସହ ଆଜି ବି ଚିହ୍ନା ପରିଚୟ ବି

ନାହିଁ । ହେଲେ ସ୍ମୃତି ରହିଛି । ଖଡ଼ିଆଳ ଅଞ୍ଚଳର ମଧ୍ୟ ଦୂରସ୍ଥ ମାନଙ୍କ ସହ ସେତେ ପ୍ରତ୍ୟକ୍ଷ ସମ୍ପର୍କ ନ ଥିଲେ ହେଁ କେତେ ପରିମାଣ ପରିଚୟ ରହିଛି । ପ୍ରଜାମାନେ ତାଙ୍କ ପ୍ରଚର ପରିସର ମଧ୍ୟରେ ଥିବା ସାହୁକାର ବଂଶୀୟମାନଙ୍କୁ ଯଥାବତ୍ ମାନସମ୍ଭ୍ରମ ଦେଖାଇଥାନ୍ତି । ଖଡ଼ିଆଳ ବସ୍ତି ଆଖପାଖରେ ଥିବା ପ୍ରଜାମାନଙ୍କ ସହ ଯଥାରୀତି ସବୁ ବ୍ୟବହାର କହିବାକୁ ନ୍ୟୂନ ହେଲେ ବି ସୁଦ୍ଧା ରହିଛି । ସ୍ନେହ ଶ୍ରଦ୍ଧା ବି ରହିଛି ।

ଲେଖକ ବର୍ତ୍ତମାନ ୭୯ବର୍ଷ ବୟସ୍କ ବୃଦ୍ଧ । ଗତ ଦେଢ଼-ଦୁଇଶହ ବର୍ଷର ଏ ବିଷୟ ଚର୍ଚ୍ଚା ପିଲାକାଳରେ ନିଜ ପିତା ମାତା ଓ ଅନ୍ୟବୃଦ୍ଧଙ୍କ ଠାରୁ ଶୁଣିଛି ଓ ଅନେକ ଦେଖିଛି ମଧ୍ୟ । ଅତଃ ଏ ସବୁ ତା'ର ପ୍ରତ୍ୟକ୍ଷ ମୂଳକ ହିଁ ଅଟେ ।

## ଉପସଂହାର

ସଂପ୍ରତି ନବୀନ ଧାରଣାର ଉପରଠାଉଁରିଆ ଦୃଷ୍ଟି ଅନୁସାରେ ଏ ପ୍ରଥାମାନଙ୍କୁ ଯେତେ ଗର୍ହିତ ବୋଲି ଭାବିଲେ ହେଁ ପ୍ରାରମ୍ଭ ଯେଉଁ କାରଣ ଓ ପରିସ୍ଥିତି ଯୋଗୁଁ ହୋଇ ଥାଉ ନା କାହିଁକି, ପରିପାକରେ ଭକ୍ତି, ବାତ୍ସଲ୍ୟ, କୃତଜ୍ଞତା ଓ ସାହାଯ୍ୟ ସହଯୋଗ. ଆଦିର ଏହା ଯେ ଗୋଟିଏ ସୁସ୍ଥ ମାନବିକତା ପୂର୍ଣ୍ଣ ଆତ୍ମୀୟ ସଂବନ୍ଧର ପରଂପରା ଓ ଦୁଷ୍ଟତା ଲାଘବକାରୀ ସାମାଜିକ ବ୍ୟବସ୍ଥା ଭାବେ ଆଧ୍ୟାତ୍ମିକ ସଂସ୍କୃତିର ଏକ ପରିଚୟ ଚିହ୍ନ ଅଟେ, ଏଥିରେ ସନ୍ଦେହ ନାହିଁ ।

"କ୍ରୀତସ୍ତାଭ୍ୟା ବିକ୍ରୀତଃ, କୃତ୍ରିମଃ ସ୍ୟାତ୍ ସ୍ୱୟଂ କୃତଃ ।
ଦତ୍ତାତ୍ମା ତୁ ସ୍ୱୟଂ ଦତ୍ତୋ. ଗର୍ଭେଭିନ୍ନୋଃ ସହୋଢଜଃ ॥
ଉତ୍ସୃଷ୍ଟୋ ଗୃହ୍ୟତେ ଯସ୍ତୁ ସୋଽପବିଦ୍ଧଃ ସୁତୋଭବେତ୍ ॥'
( ଯାଜ୍ଞବଲ୍କ୍ୟ ସ୍ମୃତି, ବ୍ୟବହାରାଧ୍ୟାୟ ୧୩୧-୩୨ )

କ୍ରୀତସ୍ତୁ ପୁତ୍ରସ୍ତାଭ୍ୟାଂ ମାତାପିତୃଭ୍ୟାଂ ମାତାପିତା ବା ବିକ୍ରୀତଃ । କୃତ୍ରିମସ୍ତୁ ପୁତ୍ରଃ ସ୍ୱୟଂ ପୁତ୍ରାର୍ଥୀନା ଧନକ୍ଷେତ୍ର ପ୍ରଦର୍ଶନାଦ୍ୟ ପ୍ରଲୋଭନୈଃ ଯଃ ପୁତ୍ରୀ କୃତଃ । ମାତାପିତୃ ବିହୀନ ସ୍ତାଭ୍ୟାଂ ତ୍ୟକ୍ତୋ ବା, ତବାହଂ ପୁତ୍ରୋ ଭବିଷ୍ୟାମି, ଇତି ସ୍ୱୟଂ ଦତ୍ତଃ । ଅପ୍ରିବିନ୍ନୋ ମାତାପିତୃଭ୍ୟାଂ ଉତ୍ସୃଷ୍ଟୋ ଯୋ ଗୃହ୍ୟତେଃ ପୁତ୍ରଃ ॥ ( ମିତାକ୍ଷରା )

ଏ ବାକ୍ୟମାନଙ୍କରୁ ଉପରକଥିତ ଚଳଣୀମାନ ଯେ ଶାସ୍ତ୍ର ସମ୍ମତ ମାନବୀୟତା ପୂର୍ଣ୍ଣ, ଏଥିରେ ସନ୍ଦେହ ନାହିଁ । ଅବଶ୍ୟ 'ସେ ଦିନ ସବୁ ଠିକ୍ ଥିଲା' ବଚନରୁ ପୂର୍ଣ୍ଣଭାବେ ନ ହେଲେ ମଧ୍ୟ ଆଧୁନିକ ଭାଷାରେ ଏ ସବୁ ପ୍ରଥାକୁ ସ୍ୱାଭାବିକ ଚଳଣୀର ଗୋଟିଏ ସୁଲଭ ସଂସ୍କରଣ କୁହାଯାଇ-ପାରେ ।

ନିରୋଦାସ (ବଳାତ୍କାରୀକୃତା ଯେ ତୁ ମ୍ଳେଚ୍ଛଚଣ୍ଡାଳ ଦସ୍ୟୁଭିଃ) ଦୃଷ୍ଟିକୋଣ ମାନରୁ ଦେଖି ତତ୍ତୁଲ୍ୟ ମନେ କରି, ପାରୁପର୍ଯ୍ୟନ୍ତ ଗର୍ହଣାରେ ସମୟ ଓ ଶକ୍ତିର ଅପବ୍ୟୟ କରୁଥିଲେ ହେଁ ଚିର ଦାରିଦ୍ର୍ୟ ନିପୀଡ଼ିତ ସମାଜରେ ଏ ସବୁର ଉପଯୋଗିତା ବର୍ତ୍ତମାନ ବି ଅଛି ଓ ସମାଜରେ ସଦ୍ଭାବଦୟତା ରହିଥିବା ଯାଏ ଥିବ, ଏହା ସୁନିଶ୍ଚିତ । ଦାରିଦ୍ର୍ୟ ହିଁ ଏହାର ମୂଳ ହୋଇଥିବାରୁ, କାରଣକୁ ଦୂର ନ କରି କେବଳ କୃତ୍ରିମ କାନ୍ଦଣାର ଅଶ୍ରୁ ସେଚନରେ କାହାରିପାଇଁ କିଛି ପଙ୍କବିକ ନାହିଁ ।

ପିଲାବିକି ହେଉଥିବା କଥା "Report of the partially Excluded Area Inquiring committee, Orissa, 1940 (Published 1941) ରେ ମଧ୍ୟ ଲିପିବଦ୍ଧ ରହିଛି । ଶୀର୍ଷସ୍ଥାନୀୟ ରାଜନୈତିକ ନେତାମାନେ ପଢି ନ ଥିବେ; ଏହା କହି ତେବେ ଗତ ୪୫ ବର୍ଷରେ ଏ ବିଷୟର ଚର୍ଚ୍ଚା କେତେ ହୋଇଛି ଓ ପ୍ରତିକାରର କି ବ୍ୟବସ୍ଥା ହୋଇଛି ? .

ଦେଶର ପ୍ରାୟଃ ସର୍ବତ୍ର ପିଲା ଚୋରି ହେଉଛନ୍ତି । ସେମାନଙ୍କୁ ବିକା ହେଉଛି, ବଳି ଦିଆ ହେଉଛି, ମୁଣ୍ଡକାମିନ ରଖି ଧନ ଅସୁଲ କରା ହେଉଛି, ବିକଳାଙ୍ଗ କରି ଭିକ ମଗେଇବାର ବ୍ୟବସାୟ କରାହେଉଛି, କିଶୋରୀ ଓ ଯୁବତୀମାନଙ୍କୁ ଅପହୃତ କରି ବେଶ୍ୟାଳୟ ମାନଙ୍କରେ ବିକ୍ରୟ କରାହେଉଛି ଓ ଏଥିପାଇଁ ବିଦେଶକୁ ରପ୍ତାନି ମଧ୍ୟ କରାହେଉଛି । ସହରାଞ୍ଚଳରେ, ବିଶେଷ କରି ଉଚ୍ଚ କର୍ମଚାରୀ ମହଲରେ ଘରଖିଆ ଚାକର ରଖିବା ସାଧାରଣ କଥା । ଦାସ ବ୍ୟବସାୟରେ ଆଧୁନିକ ସଂସ୍କରଣଭାବେ ବାଦନ ଶ୍ରମିକ ସମସ୍ୟା ମଧ୍ୟ ଆଜି ଉହାଡ଼ କରାଯାଇ ନ ପାରେ । ଏ ସବୁର ନିରୋଧପାଇଁ ଆଇନ୍ ଅଛି, ସରକାରୀ କଳ ଅଛି, ଅଥଚ ପ୍ରତିକାର କିଛି ହେଉ ନାହିଁ ।

ସଂପ୍ରତି ଯୌତୁକ ନାମରେ ସଭ୍ୟ, ଶିକ୍ଷିତ ଓ ସମ୍ପନ୍ନ ସମାଜରେ ଯେଉଁ ନିଲାମ ହେଉଛି, ତାକୁ କଡ଼ା ଆଇନ୍ ସତ୍ତ୍ୱେ ସରକାର ଲୋପ କରିପାରୁ ନାହାନ୍ତି । ଭୟାବହ ପରିଣାମ ନିତି ଦୃଷ୍ଟିଗୋଚର ହେଉଛି, ଆଧ୍ୟାତ୍ମିକ ଓ ନୈତିକମାନର ଉନ୍ନତି ବିନା ଏହା ସମ୍ଭବ ବି ନୁହେଁ ।

ଏ ସବୁ ନିତ୍ୟ ପ୍ରତ୍ୟକ୍ଷ ଅନିରୋଧ୍ୟ ଦୁର୍ନୀତି-ଦୁଷ୍କର୍ମର ତୁଳନାରେ ଏ ପାରଂପରିକ ପ୍ରଥା ବା ଚଳଣୀମାନ କେତେଦୂର ନିନ୍ଦନୀୟ ତା ସୁଧୀଜନ ବିବେଚ୍ୟ । ଏ ସବୁ ଦାରିଦ୍ର୍ୟ ଜନିତ ଚଳଣୀ,ଏବେ ଦଳମତ କି ଶ୍ରେଣୀ ନିର୍ବିଶେଷରେ ସମସ୍ତଙ୍କ ଦ୍ୱାରା ଅବାଂଛିତ ମନେ କରାଯାଉ-ଥିବାରୁ କେବଳ ଆର୍ଥିକ ପ୍ରଗତି ଦ୍ୱାରା ହିଁ ଏହାର ଲୋପ କରାଯାଇ ପାରିବ କିନ୍ତୁ କିଏ, କେବେ, କିପରି କରିବ ??

"କ୍ରୀଞ୍ଜ୍ ଦ୍ରବ୍ୟ ବିନିମୟେ" ଧାତୁର ସୌଜାର୍ଥ ବା ଆଭିଧାନିକ ଅର୍ଥମାନକୁ ଧରି, ବିଭିନ୍ନ କ୍ଷେତ୍ରରେ ତାର ବ୍ୟାବହାରିକ କିମ୍ବା ଲାକ୍ଷଣିକ ଅର୍ଥପ୍ରତି ଦୃଷ୍ଟି ନ ଦେଇ ଚାଲିଥିବା ଏ ହଟଗୋଲ୍ ବା 'ବାଗ୍‌ବିସ୍ଫୋଟର କୌଣସି ଉପଯୋଗିତା ଥିବା ଜଣାଯାଏ ନାହିଁ ।

ବିଧାନ ସଭାର ଆଖଡ଼ାରେ ବିରୋଧୀଦଳର କ୍ଷମତାସୀନ ଦଳକୁ ଗର୍ହିତ-କୁତ୍ସିତ କରିବାରେ ଶତମୁଖ ହେଉଥିବା ଓ ସରକାରୀଦଳ ତାକୁ ବାଚନିକ କାଚ ପରଦାରେ ଢାଙ୍କିବାକୁ ସହସ୍ରଭୁଜ ହେଉଥିବା ଦ୍ୱାରା ଦେଶର କୋଟି ହତାଶଙ୍କ କି ଉପକାର ହେଉଛି, କିମ୍ବା ଐତିହ୍ୟ ନ ଜାଣି, ବାସ୍ତବତା ନ ବୁଝି ରାଜ୍ୟର ଗୋଟିଏ ଅଞ୍ଚଳକୁ ବିଶ୍ୱ-ଦରବାରରେ କୁତ୍ସିତ ରୂପେ ଉପସ୍ଥାପିତ କରି ରାଜ୍ୟ ସହ ଦେଶର ମଧ୍ୟ ସମ୍ମାନ ହାନି ଘଟାଇବାର କି ସାର୍ଥକତା ଅଛି, ତାହା ସେମାନେ ହିଁ କହି ପାରିବେ । ଅଯଥା ଆତ୍ମଗର୍ହଣା ଆତ୍ମଘାତ ଅଟେ ।

( କବିରାଜ ପ୍ରୟାଗଦତ୍ତ ଜୋଶୀ )
କୋଶଲ ଭାରତୀ, କୁରିଆ, ଖଡ଼ିଆଳ
୭୬୭୧ ୦୭

# କଳାହାଣ୍ଡିରେ ଶକ୍ତି ଉପାସନା



ଯୋଗେଶ ଚନ୍ଦ୍ର ସିଂହଦେଓ

ମୃତ୍ତିକା ଘନୀଭୂତ ହେଲେ ଖଣିଜ ପଦାର୍ଥ ହୁଏ, ଇତିହାସ ଘନୀଭୂତ ହେଲେ ସାହିତ୍ୟ ଓ ସାହିତ୍ୟ ଘନୀଭୂତ ହେଲେ ସଂସ୍କୃତି ହୋଇଥାଏ । ସଂସ୍କୃତିର ବିକାଶ ହୁଏ ନୃତ୍ୟ ଓ ସଂଗୀତ ମାଧ୍ୟମରେ । କୁମାର ସାହେବ ଯୋଗେଶ ଚନ୍ଦ୍ର ସିଂହଦେଓ କଳାହାଣ୍ଡିର ମଦନପୁର ରାମପୁର ଭଳି ବଡ ବଡ ପାହାଡ ଓ ଜଙ୍ଗଲ ପରିପୂର୍ଣ୍ଣ ସଭ୍ୟ ଜଗତରୁ ବିଚ୍ଛିନ୍ନ ଏକ ଅନୁନ୍ନତ ଅଞ୍ଚଳରେ ୧୯୨୮ ମସିହାରେ କିଭଳି 'ଚନ୍ଦ୍ରମଣି' ନାମରେ ଗୋଟିଏ ପ୍ରକାଣ୍ଡ ରଙ୍ଗମଞ୍ଚ ମୁଣ୍ଡ ଟେକିଥିଲା ସେ ସଂପର୍କରେ ଏକ ଅତ୍ୟନ୍ତ ତଥ୍ୟମୂଳକ ଲେଖା ପ୍ରକାଶ କରିଛନ୍ତି 'ପଶ୍ଚିମା'ର ସାରସ୍ୱତ ସଂଖ୍ୟାରେ । ୧୯୨୮ ମସିହାରେ ଆରମ୍ଭ ହୋଇଥିବା ଏହି ନାଟ୍ୟ ଆନ୍ଦୋଳନର କ୍ରମବିକାଶ ଉପରେ କୁମାର ସାହେବ ଏକ ସୁନ୍ଦର ସନ୍ଦର୍ଭ ପ୍ରସ୍ତୁତ କରିଛନ୍ତି । ଏଠାରେ କଳାହାଣ୍ଡିରେ ଶକ୍ତି ଉପାସନା ଶୀର୍ଷକ ତାଙ୍କର ପ୍ରବନ୍ଧ ମଧ୍ୟ ଗବେଷଣା ପ୍ରସୂତ ତଥା ଅନ୍ୟ ଏକ ସଫଳ କୃତି ।

---

ଭୂପୃଷ୍ଠରୁ ଅନେକ ଯୁଗ ବିତିଯାଇଛି, କିନ୍ତୁ ଶକ୍ତି ଉପାସନାର ଅବସାନ ଘଟିନାହିଁ କି ଘଟିବନାହିଁ । ସତ୍ୟ, ତ୍ରେତୟା, ଦ୍ୱାପର ଏବଂ ବର୍ତ୍ତମାନ କଳି ଯୁଗରେ ଶକ୍ତି ଉପାସନା ପାରମ୍ପରିକ ଭାବରେ ଚାଲି ଆସିଛି । ଶକ୍ତି ଧର୍ମ ସମ୍ବନ୍ଧୀୟ ଗ୍ରନ୍ଥ ବ୍ୟାସଦେବଙ୍କ କୃତ ଦେବୀ ଭାଗବତ ଏବଂ ମାର୍କଣ୍ଡେୟଙ୍କ କୃତ ସପ୍ତସତୀ ଚଣ୍ଡୀ । ଏହା ବ୍ୟତୀତ ଶାରଳା ଦାସଙ୍କ ବିଲଙ୍କା ରାମାୟଣ ଏବଂ ଚଣ୍ଡୀ ପୁରାଣରେ ମଧ୍ୟ ଶକ୍ତି ଉପାସନାର ମହତ୍ତ୍ୱ ପ୍ରକଟିତ ହେଉଥିବାର ଲକ୍ଷ୍ୟ କରାଯାଏ ।

ହିନ୍ଦୁ ଧର୍ମରେ ଶକ୍ତି ଉପାସନାର ପରମ୍ପରା ପ୍ରଚଳିତ । ଭାରତୀୟ ସଂସ୍କୃତିରେ ଏହାର ସ୍ଥାନ ଅତୀବ ମହତ୍ତ୍ୱପୂର୍ଣ୍ଣ । ଆଦିମ ଯୁଗରୁ ଶକ୍ତିପୂଜାର ମାନବ ସମାଜରେ ବିଶେଷ ପ୍ରଭାବ ପଡ଼ିଥିବା ପ୍ରମାଣ ମିଳେ । ଯେତେବେଳେ ମହିଷାସୁର ଶାସନରେ ତ୍ରିଭୁବନ ପ୍ରକମ୍ପିତ ହେଲା । ଦେବତାମାନେ ଅତିଷ୍ଠ ହୋଇ ପରଂବ୍ରହ୍ମ ନାରାୟଣଙ୍କୁ ସ୍ତୁତି କଲେ । ସନ୍ତୋଷ ହୋଇ ଶ୍ରୀବିଷ୍ଣୁ ଦେବତାମାନଙ୍କୁ ଆଶ୍ୱାସନା ଦେଇ ମହାଶକ୍ତି ଦୁର୍ଗାଙ୍କୁ ପବିତ୍ର ମନରେ ଆରାଧନା କରିବା ପାଇଁ ନିର୍ଦ୍ଦେଶ ଦେଲେ । ଦେବତାମାନଙ୍କର କାତର କଣ୍ଠରୁ ସେହି ପ୍ରାର୍ଥନାରେ ଦେବୀ ସନ୍ତୁଷ୍ଟ ହୋଇ ମୋହିନୀ କାତ୍ୟାୟନୀ ବେଶରେ ସମସ୍ତ ଦେବାଦେବୀଙ୍କଠାରୁ ପ୍ରଧାନ ପ୍ରଧାନ ଅସ୍ତ୍ର ସବୁ ଆଣିଲେ ଏବଂ ସବୁ ଶେଷରେ ଉଗ୍ରଚଣ୍ଡୀ ବେଶରେ ସେହି ମହା ପ୍ରତାପୀ ମହିଷାସୁରଙ୍କୁ ନିଧନ କଲେ । ଏହାଦ୍ୱାରା ଜଗତ ଶାନ୍ତି ପାଇଲା ଏବଂ ସେହି ଦିନଠାରୁ ମହାମାୟୀ ଆଦ୍ୟାଶକ୍ତିଙ୍କୁ ଯୁଗେ ଯୁଗେ ନରପତି ଏବଂ ଜନସାଧାରଣ ବଂଶ ପରମ୍ପରା ଅନୁଯାୟୀ ପୂଜା କରିଆସୁଛନ୍ତି ।

ତ୍ରେତୟା ଯୁଗରେ ଶ୍ରୀରାମଚନ୍ଦ୍ର ଶରତ୍ କାଳରେ ଆଶ୍ୱିନ ଶୁକ୍ଳ ଦଶମୀ ତିଥିରେ ଶକ୍ତିରୂପିଣୀ ମା ଦୁର୍ଗାଙ୍କ ପୂଜା କରି ଲଙ୍କାର ରାଜା ରାବଣଙ୍କୁ ବଧ କରିଥିଲେ । ଦ୍ୱାପର ଯୁଗରେ ମହାଭାରତଯୁଦ୍ଧ ସମୟରେ ଭଗବାନ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ କହିଲେ, ମା ଦୁର୍ଗାଙ୍କର ସ୍ତବକର ତେବେ ଯାଇ ଯୁଦ୍ଧରେ ଜୟଲାଭ କରିବ । ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ସିଦ୍ଧିଦାତ୍ରୀ ସ୍ୱରୂପିଣୀ ଦେବୀ ଦୁର୍ଗାଙ୍କୁ ଆରାଧନା କରିବା ପାଇଁ ବୁଝାଇଦେଲେ । ଅର୍ଜ୍ଜୁନଙ୍କ ସ୍ତବରେ ଦେବୀ ସନ୍ତୁଷ୍ଟ ହୋଇ ଅର୍ଜ୍ଜୁନଙ୍କୁ ପ୍ରତ୍ୟକ୍ଷ ଭାବରେ ଦେଖାଦେଇଥିଲେ । ଅର୍ଜ୍ଜୁନଙ୍କୁ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି—

ଯେ ଯଥା ମାଂ ପ୍ରପଦ୍ୟନ୍ତେ
ତାଂ ସ୍ତଥୈବ ଭଜାମ୍ୟହମ୍

ଯିଏ ଆମକୁ ତଥା ଦେବାଦେବୀଙ୍କୁ ଯେଉଁ ଭାବରେ ଉପାସନା କରେ, ଆମେ ତାହାକୁ ସେହି ଭାବରେ ଫଳ ଦେଉଁ । ଆମ ରାଜ୍ୟରେ ଚତୁର୍ଭୁଜା ଶ୍ରୀ ଦୁର୍ଗାଙ୍କ ପୂଜା ପ୍ରଚଳନ ଥିଲା ଏବଂ ଅଦ୍ୟାବଧି ଅଛି । ସିଦ୍ଧିଦାତ୍ରୀ ଦେବୀ ସିଂହବାହିନୀ ଚତୁର୍ଭୁଜା ଏବଂ ସର୍ବଦା ପ୍ରସନ୍ନ ବଦନା ।

କଳାହାଣ୍ଡିର ପୁରାତନ ନାମ ଥିଲା କଳାମଣ୍ଡଳ, କାନ୍ତାର ତାପରେ କୁହାଗଲା କାରୁଣ୍ଡ । ୧୮୦୦ ଖ୍ରୀଷ୍ଟାବ୍ଦ ଶେଷଭାଗରେ କଳାହାଣ୍ଡି ନାମକରଣ ହେଲା । ପୌରାଣିକ କିମ୍ବଦନ୍ତୀରୁ ଜଣାଯାଉଛି ଯେ ଦ୍ୱାପର ଯୁଗରୁ କଳାହାଣ୍ଡିରେ ଶକ୍ତି ଉପାସନା ଚାଲିଆସୁଛି । ମହାଭାରତର କଥା ହେଉଛି ଦ୍ୱାପର ଯୁଗର

ଘଟଣାବଳୀ । ଐତିହାସିକ ଗବେଷକମାନେ ଉଲ୍ଲେଖ କରିଛନ୍ତି ଯେ, ଭଗବାନ ଶ୍ରୀକୃଷ୍ଣ ଖ୍ରୀଷ୍ଟପୂର୍ବ ୩୨୨୭ ଶତାବ୍ଦୀ ଜୁଲାଇ ମାସର ୧୯ ତାରିଖ ରାତ୍ରି ୩ ଘଣ୍ଟା ସମୟରେ ଜନ୍ମଗ୍ରହଣ କରିଥିଲେ । ଖ୍ରୀଷ୍ଟପୂର୍ବ ୩୧୪୧ରେ ମହାଭାରତ ଯୁଦ୍ଧ ହୋଇଥିଲା । ଜୟଦ୍ରଥ ବଧ ସମୟରେ ଶ୍ରୀକୃଷ୍ଣଙ୍କ ବୟସ ୮୬ ବର୍ଷ ହୋଇଥିଲା ବୋଲି ଉଲ୍ଲେଖ ଅଛି ବୋଲି ପୂର୍ବତନ କଳାହାଣ୍ଡି ମହାରାଜ ଶ୍ରୀ ପ୍ରତାପ କେଶରୀ ଦେଓ ପ୍ରକାଶ କରିଥିଲେ । ତେଣୁ ମୋର ଅନୁମାନ ଖ୍ରୀଷ୍ଟପୂର୍ବ ୩୨୦୦ ଶତାବ୍ଦୀରେ ଗୋସିଂଘ ଦୈତ୍ୟ କାନ୍ତାର ତଥା ମହାକାନ୍ତାରରେ ରାଜତ୍ଵ କରୁଥିଲେ । କଳାହାଣ୍ଡି, ଜୟପୁର, ଏବଂ ବସ୍ତରକୁ ମହାକାନ୍ତାର କୁହାଯାଉଥିଲା । ନର୍ଲା ନିକଟସ୍ଥ ଅସୁରଗଡ଼ ଦୁର୍ଗ ଦୈତ୍ୟରାଜ ଗୋସିଂଘ ଦୈତ୍ୟ ନିର୍ମାଣ କରିଥିଲେ ବୋଲି କଥିତ ଅଛି, ଗଡ଼ର ଭଗ୍ନାବଶେଷ ଏବଂ ଖାଇ ବର୍ତ୍ତମାନ ବିଦ୍ୟମାନ । ଅଦ୍ୟାବଧି ଗଡ଼ଭିତରେ ଶ୍ରୀ ଶ୍ରୀ ଡୋକରୀ ଦେବୀଙ୍କ ପୂଜା ହେଉଛି । ଗୋସିଂଘ ଦୈତ୍ୟକୁ ଅର୍ଜ୍ଜୁନ ମାରିଥିଲେ ।

ଏହି ପରିପ୍ରେକ୍ଷୀରେ ଶ୍ରୀ ଶ୍ରୀ ଡୋକରୀ ଦେବୀ ଏବଂ କାରୁଣ୍ଡି ବିଷୟରେ ଗୋଟିଏ ତାଳପତ୍ରର ଶ୍ଳୋକ ପୋଥିରେ ଯାହା ଲେଖା ହୋଇଥିଲା ତାହା କହିବାକୁ ଚାହେଁ, ନହେଲେ ଶକ୍ତି ଉପାସନା ଅସମ୍ପୂର୍ଣ୍ଣ ରହିଯିବ । କଳାହାଣ୍ଡି ରାଜପ୍ରାସାଦର ପୁସ୍ତକାଗାରରେ ଶ୍ରୀ ସତ୍ୟନାରାୟଣ ରାଜଗୁରୁ ଏବଂ ୰ କେଦାରନାଥ ମହାପାତ୍ର ୧୯୪୬-୪୭ ମସିହାରେ ଐତିହାସିକ ଗବେଷଣା କରୁଥିଲେ । ମଝିରେ ମଝିରେ ବଲାଙ୍ଗୀର ପାଟଣା ରାଜ୍ୟର ଐତିହାସିକ ୰ ପୂର୍ଣ୍ଣଚନ୍ଦ୍ର ରଥ ମଧ୍ୟ ଆସୁଥିଲେ । ଆମେ ସମସ୍ତେ କଳିଙ୍ଗ ଗବେଷଣା ସଂସ୍ଥାର ସଭ୍ୟ ଥିଲୁଁ । ଦିନେ ୰ କେଦାରନାଥ ମହାପାତ୍ର ଶ୍ଳୋକ ତାଳପତ୍ର ପୋଥି ବାହାର କରି ମୋତେ ଦେଖାଇଲେ ଏବଂ କେତେକାଂଶ ପଢ଼ିଦେଲେ । ତାଳପତ୍ର ପୋଥିରେ ଲେଖାଅଛି କାରୁଣ୍ଡିର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ଶ୍ରୀ ଶ୍ରୀ ଡୋକୋରୀ ବା ଡାକେଶ୍ଵରୀ । ଗଡ଼ର ନାମ କାଳକର୍ଣ୍ଣୀ ଗଡ଼ । ଏହିରାଜ୍ୟରେ ସବୁବେଳେ ରକ୍ତପାତ ହେଉଥାଏ ଏବଂ ଲୋକେ ଅଳସୁଆ । ତେଣୁ ମୋର ମନେହୁଏ ଅସୁରଗଡର ନାମ ଥିଲା କାଳକର୍ଣ୍ଣୀ ଗଡ । ଏଣୁ ଅସୁରଗଡ ନିକଟରେ କାର୍ଣ୍ଣିଖୁଣ୍ଟି ବୋଲି ଗୋଟିଏ ନାମ ଅଛି ।

ମଦନପୁର ରାମପୁର ରାଜବାଟୀରେ ଶ୍ରୀ ଶ୍ରୀ ଡୋକରୀ ଦେବୀଙ୍କ ଶରତ୍ କାଳୀନ ପୂଜା ଦ୍ଵାଦଶୀରୁ ଆରମ୍ଭ ହୁଏ ଏବଂ ମୂଳାଷ୍ଟମୀ ଦିନ ଖଣ୍ଡା ବସାଯାଏ । ଷୋହଳ ଦିନ ପୂଜା ହୁଏ, ମହାଷ୍ଟମୀ ଦିନ ରାତିରେ ପଶୁ ପ୍ରୋକ୍ଷଣ ବଳୀଦାନ ହୁଏ । ମହାନବମୀ ଦିନ ପୂଜା ସମାପନ ହୁଏ । ଦଶହରା ବିଜୟା ଦଶମୀ ଦେବୀଙ୍କ ଛତ୍ର ମହାସମାରୋହରେ ବାଜା ଘୁମୁରା ବାଦ୍ୟ ଗ୍ରହଣରେ ବାହାରକୁ ନିଆଯାଏ । ସ୍ଥାନୀୟ ହାଟ ପଡ଼ିଆରେ ପୂଜାହୋଇ ସାରିବା ପରେ ସନ୍ଧ୍ୟାରେ ମନ୍ଦିରକୁ ଫେରନ୍ତି । ଏହାର ଉଦ୍ଦେଶ୍ୟ ସମସ୍ତେ ଦର୍ଶନ କରି ପାରିବେ । ପୂର୍ବେ ଲିଖବନ୍ଧା ହେଉଥିଲା । ବର୍ତ୍ତମାନ ଲିଖବନ୍ଧା ହୁଏନାହିଁ । କିନ୍ତୁ ଆମ ଜାଣିବା ଶୁଣିବାରେ ଦେଢ଼ଶହ ବର୍ଷ ହେଲା ବିଧିବଦ୍ଧ ଭାବରେ ଶ୍ରୀ ଶ୍ରୀ ଡୋକରୀଦେବୀଙ୍କ ପୂଜା ଆଶ୍ଵିନ ଓ ଚୈତ୍ର ମାସରେ ହୋଇଅଛି । ନାଗବଂଶୀ ରାଜାମାନେ ବଂଶ ପରମ୍ପରା ପୂଜା କରି ଆସୁଛନ୍ତି । ଶ୍ରୀ ଶ୍ରୀ ଡୋକରୀ ଦେବୀଙ୍କ ପୀଠରେ ଶ୍ରୀ ବୁଡାରଜା ତଥା ମହାକାଳ ଭୈରବ, ଶ୍ରୀ ଶ୍ରୀ ମାଣିକେଶ୍ଵରୀ, ଶ୍ରୀ ଶ୍ରୀ ମାଣିକେଶ୍ଵରୀ ଖଣ୍ଡା, ଶ୍ରୀ ଶ୍ରୀ ଡୋକରୀ, ଶ୍ରୀ ଶ୍ରୀ ଡୋକରୀଙ୍କ ଖଣ୍ଡା, ଶ୍ରୀ ଶ୍ରୀ ଛତ୍ରବାଉଁଶ ଶ୍ରୀ ଲଙ୍କେଶ୍ଵରୀ, ଶ୍ରୀ ଜଳମଣ୍ଟି, ଶ୍ରୀ ଶୁନୁ ଜେନା, ଶ୍ରୀ ବାରଭାଇ ଜେନା ଏବଂ ଶ୍ରୀ ଦଶମଣ୍ଟିଙ୍କ ପୂଜା ଦଶହରା ପର୍ବରେ ହୁଏ ।

ପ୍ରାୟ ୯୦୦ ବର୍ଷ ତଳେ ଯେତେବେଳେ ନାଗବଂଶୀ ଉଦ୍ଭବ କ୍ଷତ୍ରିୟ କୁମାରମାନଙ୍କୁ ଆଦିବାସୀମାନେ ଛୋଟନାଗପୁରରୁ ଆଣିଲେ ସେତେବେଳେ କଳାହାଣ୍ଡିରେ ଗଙ୍ଗବଂଶୀମାନେ ରାଜତ୍ଵ କରୁଥିଲେ । ଅନେକ ଛୋଟ ଛୋଟ ରାଜ୍ୟରେ ବିଭକ୍ତ ଥିଲା । ଗଙ୍ଗବଂଶୀୟ ରାଜାମାନେ ଅପୁତ୍ରିକ ହେବାରୁ ଆଦିବାସୀ ମାନେ ନାଗବଂଶୀ କୁମାରମାନଙ୍କୁ ଆଣି ରାଜା କଲେ । ନାଗବଂଶୀମାନଙ୍କ ଇଷ୍ଟ ଦେବତା ବୁଢାରଜା, ପ୍ରକୃତ ନାମ ମହାକାଳ ଭୈରବ ବା ଚିନ୍ତାମଣି ବୋଲି କହନ୍ତି । ଆଦିବାସୀ ଖାଙ୍କର କନ୍ଧଶ୍ରେଣୀଭୁକ୍ତ ପୂଜକ ପ୍ରଥମେ ଧରଣୀପୂଜା କରେ । ହରିଜନ ଦଶମଣ୍ଟିଙ୍କ ପୂଜା କରି ତାଙ୍କ ନିଶାଣ ନ ଆସିଲେ କୌଣସି ପୂଜା ହୁଏନାହିଁ । ତାପରେ କ୍ଷତ୍ରିୟ ବୁଢାରଜାର ପୂଜା କରନ୍ତି । ତାପରେ ବ୍ରାହ୍ମଣ ଯିଏ ପୁରୋହିତ ଯଥାକ୍ରମେ ଶ୍ରୀ ଶ୍ରୀ ମାଣିକେଶ୍ଵରୀ, ଶ୍ରୀ ମାଣିକେଶ୍ଵରୀ ଖଣ୍ଡା, ଶ୍ରୀଶ୍ରୀ ଡୋକରୀ, ଶ୍ରୀ ଡୋକରୀଙ୍କ ଖଣ୍ଡା, ଶ୍ରୀ ଶ୍ରୀ ଛତ୍ରବାଉଁଶ, ଶ୍ରୀ ଶ୍ରୀ ଲଙ୍କେଶ୍ଵରୀ, ଶ୍ରୀ ଜଳମଣ୍ଟିଙ୍କୁ ବିଲ୍ଵପତ୍ର ଉପରେ ଚାଉଳ ମୁଠି ଅର୍ଥାତ ପୁଞ୍ଜି ପକାଇ ଆବାହନ କରି ପୂଜା କରନ୍ତି । ତାପରେ ବାହୁକ, ଶୁଦ୍ର, ଶ୍ରୀ ଶୁନୁ ଜେନା, ଶ୍ରୀ ବାରଭାଇ ଜେନା ପଞ୍ଚ ଶ୍ରୀ ଦଶମଣ୍ଟିଙ୍କୁ ବିଲ୍ଵପତ୍ର ଉପରେ ଚାଉଳ ମୁଠି ପକାଇ ଆବାହନ କରେ । ପୁରୋହିତ ପୂଜା ସମାପନ କରନ୍ତି । ଏହାକୁ ମୁଠିପୂଜା କହନ୍ତି । ଏହାପରେ ମହାପୂଜା ଆରମ୍ଭ ହୋଇଥାଏ । ଯେତେ-ବେଳେ ବ୍ରାହ୍ମଣ ନଥିଲେ ନିଜେ ରାଜା କିମ୍ବା ତାଙ୍କ ପ୍ରତିନିଧି

ମୁଠିଦ୍ୱାରା ଉକ୍ତ ଦେବୀମାନଙ୍କୁ ଆବାହନ କରି ପୂଜା କରୁଥିଲେ । ଏହା ହେଲା ରାମପୁର ଗଡର କଥା ।

ମଦନପୁର ଗଡରେ ବିଜେଶ୍ରୀ ପାଟଖଣ୍ଡାଙ୍କ ପୂଜାହୁଏ । ତାହା ପ୍ରତିପଦା ଠାରୁ ଆରମ୍ଭ ହୋଇ ସପ୍ତମୀ ଦିନ ଶେଷ ହୁଏ । ଏଠି ପାଇକ ପୂଜକ ପୂଜା କରନ୍ତି । ପ୍ରଥମେ ଶ୍ରୀ ପାଟମାହେଶ୍ୱରୀ ତାପରେ ଶ୍ରୀ ପାଟଖଣ୍ଡା ତାପରେ ଶ୍ରୀ ଛତି ବାଉଁଶକୁ ବିଲ୍ୱପତ୍ର ଉପରେ ଗୁଡ଼ୁଳ ମୁଠି ପକାଇ ଆବାହନକରି ଧୂପ, ଦୀପ, ନୈବେଦ୍ୟ ଦେଇ ପୂଜା କରନ୍ତି । ସପ୍ତମୀ ଦିନ ମହାପଶୁ ବଳି ପଡ଼େ । ତାପରେ ଛତିକୁ ଜଙ୍ଗଲକୁ ନେଇଯାଆନ୍ତି । ସେଠି ପୁଣି ପୀଠ ଦେବତାମାନଙ୍କୁ ଆବାହନ କରି ପୂଜାନ୍ତେ ଗ୍ରାମବଳି ଦିଆ-ଯାଏ । ଛତିକୁ ବନଦୁର୍ଗା ବୋଲି କହନ୍ତି । ଏହି ଦେବୀମାନେ ସମ୍ବଲପୁର, ବଲାଙ୍ଗୀର, ଜରାସିଙ୍ଗା ଓ ଖଲିଗଡ଼ରେ ପୂଜା ପାଉଛନ୍ତି ଅତଏବ ପାଟଖଣ୍ଡା ଦକ୍ଷିଣ କୋଶଳର ଆରାଧ୍ୟଦେବୀ । ତେଣୁ ମୋର ମନେହୁଏ ମଦନପୁର ପର୍ଯ୍ୟନ୍ତ ବୋଧହୁଏ କୋଶଳ ରାଜ୍ୟ ଥିଲା । କିନ୍ତୁ ରାମପୁର କାରୁଣ୍ଡ ରାଜ୍ୟର । ଯେହେତୁ ଶ୍ରୀ ଶ୍ରୀ ଡୋକରୀ ପୂଜା ପାଉଛନ୍ତି । ଶ୍ରୀ ଡୋକରୀ ଜୟପାଟଣାର ଶେଷ ସୀମା ତାଲ ଗୁଡ଼ରେ ମଧ୍ୟ ପୂଜା ପାଉଛନ୍ତି । ଜୟପାଟଣାର ରାଜା ବା ରାଜମାତା ଦଶହରାପର୍ବ ପାଇଁ ତାଲ୍‌ଗୁଡ଼ ଯାଇ ଶ୍ରୀ ଡୋକରୀ ଦେବୀଙ୍କ ପୂଜା କରନ୍ତି । ତାଲ୍‌ଗୁଡ଼ ଗ୍ରାମ ମୁଖିଗୁଡ଼ା ଇନ୍ଦ୍ରାବତୀ ଜଳ ଏବଂ ବିଦ୍ୟୁତ୍ ପ୍ରକଳ୍ପର ଉତ୍ତରରେ ପ୍ରାୟ ୫ କିଲୋମିଟର ଦୂରରେ ଅବସ୍ଥିତ । ମୋର କହିବାର ଉଦ୍ଦେଶ୍ୟ କଳାହାଣ୍ଡି ଉତ୍ତରରେ ମ: ରାମପୁରରୁ ଦକ୍ଷିଣରେ ତାଲ୍‌ଗୁଡ଼ ଦୂରତା ପ୍ରାୟ ୯୦ ମାଇଲ ହେବ । ଆମ୍ବପାଣିରେ ବୁଢ଼ାରଜାଙ୍କର ପୂଜା ହେଉଛି । ରଣମାଳ କର୍ଲାପାଟରେ ମଧ୍ୟ ଶ୍ରୀ ଶ୍ରୀ ଡୋକରୀ ଦେବୀଙ୍କ ପୂଜା ହେଉଅଛି ।

ଜୁନାଗଡ଼ କଳାହାଣ୍ଡି ମହାରାଜାଙ୍କର ପୂର୍ବତନ ଗଡ଼ । ସେଠି ବିଜେ ଶ୍ରୀ ଲଙ୍କେଶ୍ୱରୀଙ୍କ ପୀଠରେ ଦଶହରା ପର୍ବ ପାଳିତ ହେଉଛି । ମୂଳାଷ୍ଟମୀ ଦିନ କଳାହାଣ୍ଡି ମହାରାଜା ନିର୍ଜଳା ଉପବାସ ରହି ଶ୍ରୀ ଲଙ୍କେଶ୍ୱରୀଙ୍କ ପୀଠରେ ଖଣ୍ଡା ବସାନ୍ତି । ସେ ଦିନ ବହୁଲୋକଙ୍କ ସମାଗମ ହୁଏ ଏବଂ ଘୁମୁରା ନାଚ, ଦଣ୍ଡ ନାଚ ଇତ୍ୟାଦି ଲୋକନୃତ୍ୟ ଦେଖିବାକୁ ମିଳେ । ନବରାତ୍ରୀ ପୂଜା ପୁରୋହିତମାନେ ସମାପନ କରନ୍ତି । କିନ୍ତୁ ଖଣ୍ଡା ବସାଇବାଟା ମୁଖ୍ୟ ପର୍ବ । ଖଣ୍ଡା ଏବଂ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ମାନଙ୍କୁ ସମସ୍ତେ ଦୁର୍ଗା ବୋଲି ଧରିନେଇଛନ୍ତି । ଛତିକୁ ବନଦୁର୍ଗା ବୋଲି ଗଣ୍ୟ କରନ୍ତି । ଏହିପରି ଆଦିବାସୀ ତଥା ଗଣ୍ଡ ସମ୍ପ୍ରଦାୟର ଲୋକେ ସୋନପୁର ପଟ୍ଟଧରୁଆଙ୍କ ଠାରୁ ପାଟସୂତା ଆଣି ଅଷ୍ଟମୀ ଦିନ ଛତିରୁ ପୁରୁଣା ଶାଢ଼ୀକୁ ବାହାର କରି ନୂଆଁ ଶାଢ଼ୀ ହାତରେ ସିଲେଇ କରନ୍ତି । ଭବାନୀପାଟଣା ରାଜପ୍ରାସାଦ ପରିସର ଭିତରେ ବିଜେ ଶ୍ରୀ ମାଣିକେଶ୍ୱରୀଙ୍କ ମନ୍ଦିର ଅବସ୍ଥିତ । ଶ୍ରୀ ଶ୍ରୀ ମାଣିକେଶ୍ୱରୀଙ୍କ ପୂଜା ମୂଳାଷ୍ଟମୀ ଠାରୁ ମହାଷ୍ଟମୀ ପର୍ଯ୍ୟନ୍ତ ଷୋହଳ ଦିନ ପୂଜା ହୁଏ । ମହାଷ୍ଟମୀର ଅର୍ଦ୍ଧରାତ୍ରୀ ପୂଜାପରେ ଛତିକୁ ଗୋଟିଏ ପାହାଡ଼କୁ ପୁରୋହିତ ନେଇ ଯାଆନ୍ତି । ଉକ୍ତ ପାହାଡ଼ରେ ଜେନାଙ୍କ ପୂଜା ହୁଏ । ରାତିରେ ଗଲାବେଳେ ଛତିକୁ କେହି ଦେଖନ୍ତି ନାହିଁ । ପାହାଡ଼ରେ ପୂଜାଖାଇ ଫେରିଲା ବେଳେ ସକାଳେ ରାସ୍ତା କଡ଼ରେ ହଜାର ହଜାର ଲୋକ ଛତିକୁ ଦର୍ଶନ କରନ୍ତି । ଏବଂ ଭକ୍ତମାନେ ଶହ ଶହ ଛାଗବଳି ଦିଅନ୍ତି । ମନ୍ଦିରକୁ ଛତି ପହଞ୍ଚିଲା ବେଳକୁ ପ୍ରାୟ ସକାଳ ୮ କିମ୍ବା ୯ଟା ହୋଇଯାଏ । ପୂଜକ ଛତିକୁ ଦୁଇହାତରେ ଧରିଥାନ୍ତି । ପୂଜକଙ୍କୁ ତିନି ଚାରିଜଣ ଧରିଥାନ୍ତି । ଛତି ଟୁଲୁଟୁଲୁ ଥରିଥରି ଆସୁଥାଏ । ପୂଜକ ସମ୍ଭାଳି ପାରନ୍ତି ନାହିଁ । ମହାରାଜା ଛତିକୁ ସ୍ୱାଗତ କରିବାପାଇଁ ମନ୍ଦିରରେ ଅପେକ୍ଷା କରି ରହିଥାନ୍ତି । ଛତି ମନ୍ଦିରରେ ପହଞ୍ଚିବା ମାତ୍ରେ ପୁରୋହିତଙ୍କ ପାଦରେ ଜଳ ଢ଼ାଳି ଦିଅନ୍ତି ଏବଂ ଗୁଡ଼ୁଳ ପୁଞ୍ଜିଏ ଛତି ଉପରକୁ ଫିଙ୍ଗି ବାନ୍ଧେଇ ଦିଅନ୍ତି । ଥରୁଥିବା ଛତି ସଙ୍ଗେ ସଙ୍ଗେ ଶାନ୍ତ ଓ ନିଶ୍ଚଳ ହୋଇଯିବାର ମୁଁ ଦେଖିଛି । ପୁରୋହିତଙ୍କ ବାହା ଧରିବା ଲୋକେ ଛାଡ଼ି ଦିଅନ୍ତି । ପୁରୋହିତ ଏକୁଟିଆ ମନ୍ଦିର ଭିତରକୁ ଛତି ନେଇ ଯାଆନ୍ତି । ତାପରେ ମହାପଶୁବଳି ହୁଏ । ବିଜୟା ଦଶମୀ ମହାସମାରୋହରେ ପାଳିତ ହୁଏ, ଏବଂ ଲାଖବନ୍ଧା ହୁଏ । ଧୂଆମୂଳ ରାମପୁରରେ ମଧ୍ୟ ବିଜେ ଶ୍ରୀମାଣିକେଶ୍ୱରୀଙ୍କ ଦଶହରା ପୂଜାହୁଏ । କଳାହାଣ୍ଡିର ଅନେକ ଲୋକ ଘରେ ଘରେ ଖଣ୍ଡାକୁ ଆବାହନ କରି ନିଜ ଇଷ୍ଟ ଦେବୀ ବୋଲି ପୂଜା କରିଥାନ୍ତି । ଖଣ୍ଡା ବା ଖଡ୍‌ଗ ହେଉଛନ୍ତି ମହାଶକ୍ତି ରୂପିଣୀ ଦୁର୍ଗାଙ୍କ ପ୍ରତୀକ ଏବଂ ଛତି ହେଉ-ଛନ୍ତି ଚତୁର୍ଭୁଜା ବନ ଦୁର୍ଗାଙ୍କ ପ୍ରତୀକ । ଆଦିବାସୀମାନେ ପାହାଡ଼ ପର୍ବତମାନଙ୍କୁ ପଥର ଖଣ୍ଡିଏ ରଖି ସିନ୍ଦୂର ଲଗାଇ ବିଲ୍ୱପତ୍ର ଉପରେ ଗୁଡ଼ୁଳର ପୁଞ୍ଜି ପକାଇ ଦୀପ, ଧୂପ ଦେଇ ପୂଜା କରି ବଳି ଦିଅନ୍ତି । ସାଧାରଣ ଲୋକ କହନ୍ତି ମାନିଲେ ଦେବତା ନମାନିଲେ ପଥର । ଲୋକଙ୍କ ଅଗାଧ ଭକ୍ତି ଏବଂ ବିଶ୍ୱାସରେ ଏହିପରି ଭାବରେ ଯୁଗ ଯୁଗ ଧରି କଳାହାଣ୍ଡିରେ ଶକ୍ତିର ଉପାସନା ଚାଲି ଆସୁଛି ।

ମଦନପୁରସ୍ଥିତ ବୁଢ଼ୀଗଡ଼ରେ ଗୋଟିଏ ସୁବର୍ଣ୍ଣ ମୁଦ୍ରା ପାଇଥିଲା । ଉକ୍ତ ମୁଦ୍ରାରେ ଶତଭୁଜା ଦୁର୍ଗାଙ୍କ ମୂର୍ତ୍ତି, ପାଲି ଭାଷାର କିଛି ଲେଖା ଏବଂ ତଳେ ଦୁଇପଦ୍ମ ପାଖୁଡ଼ା

ଥିଲା । ମୁଁ ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କୁ ଦେଖାଇଥିଲି । ସେ କହିଲେ ମୁଦ୍ରାରେ ଲେଖା ହୋଇଛି ଶ୍ରୀ ମହେନ୍ଦ୍ରାଦିତ୍ୟ । ଗରୁଡ଼ ଦେଖାଯାଉଥିବା ମୂର୍ତ୍ତିକୁ ଶତଭୁଜା ଦୁର୍ଗା ବୋଲି କହିଲେ । ଶ୍ରୀ ମହେନ୍ଦ୍ରାଦିତ୍ୟ କୋଶଳ ରାଜାଥିଲେ । ତାଙ୍କ ରାଜଧାନୀ ଶ୍ରୀପୁର ଥିଲା ବୋଲି କହିଲେ । ଧରିନେବାକୁ ପଡ଼ିବ କୋଶଳରେ ଶତଭୁଜା ଦୁର୍ଗାଙ୍କ ପୂଜାର ପ୍ରଚଳନ ଥିଲା । ମଧ୍ୟପ୍ରଦେଶର ରାୟପୁରରୁ ପ୍ରାୟ ୧୫୦ ମାଇଲ ଦୂରରେ ଶ୍ରୀପୁର ଅବସ୍ଥିତ । ଏହି ସମୟରେ କାରୁଣ୍ଡ ତଥା କଳାହାଣ୍ଡିରେ ବ୍ୟାଘ୍ରରାଜ ରାଜତ୍ୱ କରୁଥିଲେ । ପରବର୍ତ୍ତୀ କାଳରେ କୁଷାଣ ରାଜାମାନେ ଅସୁରଗଡ଼ରେ ଅବସ୍ଥାନ କରି ରାଜତ୍ୱ କରୁଥିଲେ ।

ତେଣୁ ଆବହମାନ କାଳରୁ କଳାହାଣ୍ଡିରେ ଶକ୍ତି ଉପାସନା ପ୍ରଚଳିତ ହୋଇ ଆସୁଅଛି । ପୂର୍ବ କାଳରେ ଲୋକ ଏବଂ ରାଜାମାନେ କାଳର କବଳରେ ଚାଲିଯାଇଛନ୍ତି, କିନ୍ତୁ ଦେବାଦେବୀ ମାନଙ୍କ ପୀଠ ରହିଛି ଏବଂ ପରବର୍ତ୍ତୀ ଲୋକେ ପୂଜାକରି ଆସୁଛନ୍ତି ।

ସୃଷ୍ଟି ସ୍ଥିତି ବିନାଶାନାଂ
ଶକ୍ତି ଭୂତେ ସନାତନୀ,
ଗୁଣାଶୟେ ଗୁଣାମୟେ
ନାରାୟଣୀ ନମସ୍ତୁତେ ।

●

ଆକାଶବାଣୀ,
ଜୟପୁର ସୌଜନ୍ୟରୁ

# OUR MOTTO





## Utmost Health care for our Employees

Rourkela Steel Plant extends complete health care for its employees. The 600 bed Ispat General Hospital with an array of modern medical units and a wide range of sophisticated equipment brings to the employees, the best care that is made available by modern medical science. This is supplemented by the health care facilities offered through the network of medical units and health centres spread through the steel, fertilizer and the mines townships.

The occupational Health Centre, a new concept in medical science strives to meet the requirement of the employees right near the workspots.



**STEEL AUTHORITY OF INDIA LTD.**

**ROURKELA STEEL PLANT**

Art Cell Public Relations Depo

